# ଦେଉଳ ତୋଳା

## ଓ

## ବେଢ଼ା ପରିକ୍ରମା

( ନୂତନ ମୁଦ୍ରଣ )




ପ୍ରକାଶକ ଓ ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ ନଂ—୨୬୦୮୨୯୭

(୧୨୫) ମୂଲ୍ୟ—ଛଅଟଙ୍କା ମାତ୍ର


Digitized by srujanika@gmail.com

# ଦେଉଳ ତୋଳା

ଜୟ ଜୟ ଜଗନ୍ନାଥ ଭନଧୂପ ବେଳେ । ଦର୍ଶନ କରିବା ପାଇଁ କଳା ପାବଚ୍ଛରେ ॥ ଦନ୍ତୁଡ଼ ଗହଳେ ଯାଇ ନ ଦିଶେ ଶ୍ରୀମୁଖ । ନବରତ୍ନ ମାଳା ଯେ କସ୍ତୁରୀ ରେଖ ଦେଖ ॥ କଟଣି ବାହୁଟି ଶୋଭେ ଚୂଳମାଳା ଧଣ୍ଡା । ଚୂଳର ଉପରେ ଶୋଭେ ଶ୍ବେତ ଯେ ପାଖୁଡ଼ା । କୋଟି କୋଟି ମାଳ ଯେ ଶ୍ରୀଅଙ୍ଗେ ପଡ଼ିଥାଇ । ସୁନ୍ଦର ଦିଶନ୍ତି ପ୍ରଭୁ ବଳରାମ ଭାଇ । ଫୁଲର ଚଉରି କେତେ କହିବଇଁ ଛଟା । ବାରଦ୍ୱାର ଲମ୍ବିଥାଇ ଧଣ୍ଡାମାଳା ଗୋଟା ॥ ତେରଦ୍ୱାର ଲମ୍ବିଥାଇ ତୁଳସୀର ମାଳ । ଝରଝୁମ୍ପା ପାଖୁଡ଼ା ସେବନ୍ତୀ ଗଣ୍ଡସ୍ଥଳ ଦାସୀମାନେ କୁନ୍ଦାକୁନ୍ଦ ବୈଷ୍ଣବ ଖଟଣି । ଡ଼ାକ ଯେ କଂସାଳ କର ବାନ୍ଧଛନ୍ତି ବେଣୀ । କେହୁ ଯେ ଆଳଟ କେହୁ ଚାମର ଧରନ୍ତି । ଧୂପର ଗହଳେ କେହୁ ଦୁଅନ୍ତି ଯନ୍ତାଯନ୍ତ । ଚଉମୁଣ୍ଡା ଯାଇ ତୋ ଧବଳମୟ ପୁର । ମୁକତ ତୈଲକ୍ଷମାନ ହେଉଛନ୍ତି ଜୁର । ଜୟ ଜୟ ଜଗନ୍ନାଥ ମହେନ୍ଦ୍ର ଲୋଚନ । ଶ୍ୟାମଳ ମେଘପ୍ରାୟ ତୋ ଶରୀର ଶୋଭାବନ । ଚନ୍ଦ୍ରମା ପ୍ରତ୍ୟେକ ଦିଶେ ବେଶ ଚକାଡ଼ୋଳା । ସୁଜନ ଜନମାନଙ୍କୁ ତାରିବାକୁ ଭେଳା ॥ ସମୁଦ୍ର ତଟରେ ସେ ପୋହଳା ନାବ ଭଳି ସେ । ସେହିମନ୍ତ ଜଗନ୍ନାଥ ବଂଶୀଧର ଦିଶେ । ସମୁଦ୍ର ତଟରେ କ ଭସଇ ପଦ୍ମତୋଳା । ସେହିମନ୍ତ ବଦନ ଦିଶଇ ଚକାଡ଼ୋଳା ॥ ଜୟ ଜୟ ଜଗନ୍ନାଥ ଜୟ ନାରାୟଣ । ଅଭୟ ପାଦପଦ୍ମରେ ପଶିବା ଶରଣ । ଜୟ ଜୟ ପତିତପାବନ ଜୟ ଗଣପତି ନୀଳବର୍ଣ୍ଣ ଶରୀର ତୋ ଦଧିମୁଖ ମୂର୍ତ୍ତି । ସୁନ୍ଦର ଦିଶଇ ନାଥ ମହାବିନାୟକ । ଜଳ ସ୍ଥଳ ପାତାଳରେ ନାମ ତୋ ତ୍ରୈଲୋକ୍ୟ ॥ ତ୍ରିପୁର ଧ୍ୱଂସ ନ ଗଲା ଯାର ବୁଦ୍ଧି ବଳେ । କାଞ୍ଚିପୁର ଧ୍ୱଂସିଲୁ

Digitized by srujanika@gmail.com

ତୋହର କୋପାନଳେ ॥ ମଧୁକର୍ଣ୍ଣିକା ତୀର୍ଥରେ ବସେଜ ସଦାଶିବ । ନିରଞ୍ଜନ ପୁରୁଷ ତୁ ନାହିଁ ରୂପି ହବ ॥ ପ୍ରଳୟ ମହାପ୍ରଳୟ ତୁହି ସିନା ଜାଣୁ । ମନୁ ଏକ ଗଲେ ତୁ ଦିବସ ପ୍ରାୟ ମଣୁ ॥ ପୃଥିବୀ ଯେ ଆପ ତେଜ ବାୟୁ ଯେ ଆକାଶ । ପଞ୍ଚଦ୍ରବ୍ୟ ରୂପେ ନିରାକାର ଯେ ପୁରୁଷ । ସିନ୍ଦୂର ପ୍ରାୟେକ ପାରିଜାତ କର ମାଳ । ମତ୍ତ ଯେ ମାତଙ୍ଗ ତୋର ଗଣ୍ଡସ୍ଥଳେ ଲୋଳ ॥ ଶ୍ରୀଅଙ୍ଗରେ ପଦକ ଯେ ଝଟକଇ ରଙ୍ଗ । ଅନନ୍ତ ପଇତା ତୋର ବିରାଜଇ ଅଙ୍ଗେ । ସେ ଗଣନାଥଙ୍କ ପଦ୍ମପାଦରେ ଶରଣ । ଉଦ୍ଧର ଧର ହେ ମୋତେ ପାର୍ବତୀ ନନ୍ଦନ ॥ ବନ୍ଦଇ ଯେ ହନୁମନ୍ତ ପବନ ତନୟେ । ସ୍ୱୟମ୍ଭୁ ଉତ୍ପନ୍ନ ଯେ ଅଞ୍ଜନା ଗର୍ଭେ ମାୟେ ॥ ବନ୍ଧ ଯେ ଆଣିଲୁ ନାଥ ପର୍ବତ ନିଚୟ । ଶ୍ରୀରାମକାର୍ଯ୍ୟକୁ ହନୁ ଅଟନ୍ତ ନିର୍ଭୟ ॥ ଯାହାଯୋଗୁ ରାମଚନ୍ଦ୍ର ଲଙ୍କା କଲେ ଜୟ । ସ୍ୱର୍ଗରେ ଅଭୟ ହନୁ ମର୍ତ୍ତ୍ୟରେ ଅକ୍ଷୟ । ସେ ହନୁମନ୍ତର ପଦ୍ମପାଦରେ ଶରଣ । ଅନୁଗ୍ରହ କର ମୋତେ ଦେବାକୁ ପୁରଣ ॥ ଯେଉଁଠାରେ ପଦେ ଅଧେ ନ ଆସିବ ଅବା । ପ୍ରସନ୍ନ ହେ ଲଣ ପ୍ରଭୁ ମୋତେ କହିଦେବା ॥ ଜୟ ଜୟ ଜଗନ୍ନାଥ ଜୟ ନାରାୟଣ । ଅଭୟ ପଦ୍ମପାଦରେ ପଶିଲି ଶରଣ ଶୁକମୁନି ଚରଣେ ଯେ ପଟକ ପଡ଼ିଲି । କହ ମହାମୁନି ମୋତେ ବୋଲିଣ ବୋଇଲି ॥ ଜଗବେନ୍ଦୁ ଚରିତ ଅମୃତମୟ ରସ । ତୁମ ମୁଖୁ ଶୁଣିଣ ପାତକ ହେଉ ଧ୍ୱଂସ ॥ କହନ୍ତି ଯେ ମହାମୁନି ଶୁଣ ହେ ରାଜନ । କଳିଯୁଗ କଥା ଏହି ଶ୍ରୀସ୍କନ୍ଦ ପୁରାଣ ॥ ଧନ୍ୟ ଧନ୍ୟ ଅଟଇ ଗୌଳକ ବନରାଜା ॥ ବିଷ୍ଣୁଙ୍କୁ ନ ପାଇ ଆନେ ନ କରନ୍ତ ପୂଜା ॥ ଚାରି ଦେ ଦିଗକୁ ରାଜା ଦୂତ ବରଗିଲେ । ବିଷ୍ଣୁଙ୍କୁ ବହନ ଖୋଜି ଆଣ ହେ ବୋଇଲେ । ଉତ୍ତର ଦିଗକୁ ତାର ଯେଉଁ ଦୂତ ଗଲେ ॥ ଏକମନ୍ତ୍ରୀ ବରଷେ ସେ ଲେଉଟି ଅଇଲେ । ନ ପାଇଲେ

Digitized by srujanika@gmail.com

ବସ୍ତୁ ବୋଲି ରାଜାଙ୍କୁ କହିଲି । ଶୁଣିଣ ରାଜନ ମନେ ଦୁଃଖିତ ହୋଇଲି । ଦକ୍ଷିଣ ପଶ୍ଚିମ ଆଜ୍ଞେ ଯେଉଁ ଦୂତେ ଗଲେ । ବାସୁଦେବ ଚିହ୍ନ ବର୍ଣ୍ଣ ଖୋଜି ନ ପାଇଲେ । ଏକବର୍ଷ ବରଷେ ଯେ ଲେଉଟି ଅଇଲେ । ନ ପାଇଲୁ ବସ୍ତୁ ବୋଲି ରାଜାଙ୍କୁ କହିଲେ ॥ ତାହା ଶୁଣି ରାଜନ ଯେ ବହୁଚିନ୍ତା କଲି । ମନେ ପୂର୍ବ ଇନ୍ଦ୍ରଦ୍ୟୁମ୍ନ ବିସ୍ମୟ ହୋଇଲି । ଅମ୍ଭା ମୁଁ କେତେଜଣ ଦେବ ବୋଲିଣ ବୋଇଲି । ଏତେ ବୋଲି ରାଜା ମୁହଁ ମୋଡ଼ିଣ ଶୋଇଲି ॥ ପୂର୍ବ ଦିଗକୁ ରାଜାର ଯେଉଁ ଦୂତ ଗଲେ । ଶବର ପଲ୍ଲୀରେ ଯାଇ ପ୍ରବେଶ ହୋଇଲି ॥ ଶବର ଶବରୀ ତାର ଘରେ କେହି ନାହିଁ ଲଳିତା କୁମାରୀ ତାର ଗୃହେ ଏକା ଥାଇ ॥ ଏମନ୍ତେ ମିଳିଲା ବିଦ୍ୟାପତି ଯେ ବ୍ରାହ୍ମଣ । ତାହାକୁ ଦେଖି ଲଳିତା ବୋଲଇ ବଚନ ॥ ବସ ହେ ପଣ୍ଡାଏ ବୋଲି ମୃଗଚର୍ମ ଦେଲା । ଏଡ଼େ ଦୁର୍ଗମକୁ କାହୁଁ ଅତିଥି ଅଇଲା । ଇନ୍ଦ୍ରଦ୍ୟୁମ୍ନ ଦୂତ ରହିଲା ସେ ତାର ଘର । ଏମନ୍ତେ ଆସି ମିଳିଲା ବସୁ ଯେ ଶବର ॥ ପଚରଇ ଶବର ଦୁହିତ ମୁଖ ଚାହିଁ ॥ ଅତିଥି ଗୋଟିକ ମାଗୋ କାହିଁରୁ ଅଛଇ ॥ ବୋଲଇ ପତି ବ୍ରାହ୍ମଣ ଶୁଣସି ହୋ ତୁହି । ବନସ୍ତରେ ବୁଲୁଥାଇ ମୋର ପେଟପାଇଁ ॥ ଶବର ବୋଇଲା ପଣ୍ଡା ମୋର ଘରେ ଥିବୁ । ଯେତେ ଅନ୍ନ ଲୋଡ଼ା ତୋର ଦିନରେ ଖାଇବୁ ॥ ଲଳିତାକୁ ବୋଇଲା ତୁ ଏମନ୍ତ କରିବୁ । ଏ ବ୍ରାହ୍ମଣ କୋଟିକର ସେବା କରୁଥିବୁ ॥ ଏମନ୍ତେଣ ଥୋକାଏକ ଦିନ ତହୁଁ ଗଲା । ବିଦ୍ୟାପତି ବ୍ରାହ୍ମଣକୁ ଶବର କହିଲା ॥ ବୋଲଇ ଶବର ତୁ ହୋ ଶୁଣସି ବ୍ରାହ୍ମଣ । ଦୁହିତା ଗୋଟିକୁ ତୋତେ କରିବି ପ୍ରଦାନ । ବ୍ରାହ୍ମଣ ବୋଇଲା ତୁ ଯେ ଜାତିରେ ଶବର । କେମନ୍ତେ ମୁଁ ଝିଅ ବିଭା ହୋଇବି ତୋହର ॥ ଶବର ବୋଇଲା ଝିଅ ପ୍ରଦାନ ନୋହିଲେ ।

Digitized by srujanika@gmail.com

ମୁଣ୍ଡକାଟି ପକାଇବ ଏକବାଣେ ଭଲେ ॥ ଡ଼ମଣା ଧନୁରେ ନେଇ ଗୁଣ ଚଢାଇଲ । ମୋହର ଝିଅକୁ ବଶ ହୋଇବୁ ବୋଇଲ ॥ ମୋହର ଉପର ବଂଶେ ପିତା ମୋର ଥିଲ । ଏକା-ବାଣକରେ ବାସୁଦେବଙ୍କୁ ମାଇଲ ॥ ତାହାର ନନ୍ଦନ ବଶୁ ଶବର ଯେ ମୁହିଁ । ମୋ ଝିଅ ବଶ ନୋହିଲେ ବରତିବୁ ନାହିଁ ॥ ଏହା ଶୁଣି ବ୍ରାହ୍ମଣ ଯେ ସ୍ତବ୍ଧ ହୋଇଲା । କହାର ବାଣ ସେ ଜଗନ୍ନାଥ କାହିଁଥିଲା ॥ ଏହ କଥା ଶବର ହୋ କହିଦେବୁ ମୋତେ । ତେବେ ତୋ ଝିଅକୁ ବଶ ହୋଇବ ଯୁକତେ । ଶବର ବୋଇଲା ଶୁଣ ସୁବେଦୀ ବ୍ରାହ୍ମଣ । କୋକୁଆ ଯେ ଉଆଇଲେ ଦେବ ନାରାୟଣ । ଦ୍ୱାରକାପୁରରେ ଯେ କୋକୁଆ ଭୟ କଲେ । କୋକୁଆ ଭୟରେ କେହି ରହି ନ ପାରିଲେ ॥ ସାତବଂଶ ଲୋକ ଘେନ ପ୍ରଭୁ ନାରାୟଣ । କୋକୁଆ ଯେ ମାରିବାକୁ ବାହାର ଆପଣ ॥ ଯାଦବ ଦେଖିଣ କୋକୁଆ ଯେ ପଳାଇଲା । କଦମ୍ବ ବୃକ୍ଷରେ ଯାଇ ଗୋପନ ହୋଇଲା ॥ ସମସ୍ତେ ବୋଇଲେ ଭୟେ କୋକୁଆ ପଶିଲା । କୋପେ ବଳରାମ ନେଇ ମୁଷଳ ପିଟିଲା । କଦମ୍ବ ବୃକ୍ଷରୁ କ୍ଷୀର ହୋଇଲା ବାହାର । କାଦମ୍ବରୀ ପାନେ ସେ ହୋଇଲେ ମତୁଆଳ । ଏକକୁ ଆରେକ କେହି ଚହ୍ନି ନ ପାରିଲେ । ସନ୍ତରି ବଣରେ ହଣାହଣି ହୋଇ ମଲେ ॥ ସମସ୍ତଙ୍କୁ ମରାଇଣ ପ୍ରଭୁ ଚକ୍ରଧର ॥ ଶିଆଳି ଲତାର ମୂଳେ ହେଲେ ଯାଇଁ ସ୍ଥିର । ଶିଆଳି ଲତାକୁ କାନ୍ଧ ଉଙ୍କୁଡଲେ ଦୋଳ । ତହିଁର ଉପରେ ସେ ବଇସୁ ବନମାଳୀ ॥ ପବନ ଦେବତା ଦୋଳ ଦିଏ ପହଞ୍ଚାଇ । ଦେ ଲାଗି ହେଉଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥ ସେ ଦିନ ଯେ ପିତା ମୋର ମୃଗୟାକୁ ଗଲା । ବୁଲି ବୁଲି ବନସ୍ତରେ କିଛି ନ ପାଇଲା ॥

Digitized by srujanika@gmail.com

ପାଦପଦ୍ମ ଦୁଇରେ ତା ପଦ୍ମ ଫୁଟିଥିଲା । ମୃଗକର୍ଣ୍ଣ ପ୍ରାୟେ ଖଣ୍ଡ ଦୂରକୁ ଦିଶିଲା ॥ ମୃଗକର୍ଣ୍ଣ ବୋଲି ପିତା ଛାଡ଼ିଲେକ ବାଣ । ବାଜିଲା ନାରାଚ ଯାଇ ଗୋବିନ୍ଦ ପଦେଣ ॥ ନାରାଚ ବାଜନ୍ତେଣ ଆକୁଳ ନାରାୟଣ । ଆରତେ ଡାକଲେ ମୋତେ ରଖ ହେ ଅର୍ଜ୍ଜୁନ ॥ ମୋତେ ରକ୍ଷାକର ବାବୁ ଧନଞ୍ଜୟ ପାର୍ଥ । ପ୍ରାଣ ଭୟେ ଆରତେ ଡାକଲେ ଜଗନ୍ନାଥ ॥ ମୃଗ ପ୍ରାୟେ ବୁଝି ଯେ ନାରାଚ ବିନ୍ଧିଥିଲା । କଣ୍ଟରେ ହୁଅନ୍ତେ ଜଗନ୍ନାଥଙ୍କୁ ଦେଖିଲା । ଠାକୁର ବୋଇଲେ ବ୍ୟାଧ ମାଇଲୁ'ରେ ମୋତେ । ତୋର କିଛି ଦୋଷ ନାହିଁ ଜାଣୁ ଛୁ ନରତେ ॥ ତ୍ରେତୟା ଯୁଗରେ ରଜା ବାଳି ଯେ ରାଜନ । ଅକାରଣେ ତାହାକୁ ମୁଁ ମାରିଅଛି ବାଣ ॥ ପିତା ଶବ୍ଦ ପକ୍ଷେ ବ୍ୟାଧ କଲୁ ଆତ୍ମ ହତ ॥ ପିତୃରଣ ସୁଝିଲୁ ତୁ ବଡ଼ ଭାଗ୍ୟବନ୍ତ ॥ ଭୟ ତୁ ନ କର ରଜା ତୋର ଦୋଷ ନାହିଁ । କୈବଲ୍ୟ ଭକ୍ଷିବୁ ରଜା ପିତା ଶବ୍ଦ ହନ୍ତି । ହରିଲଇଁ ତୋର ଦୋଷ ସଂଶ ପରାକୃତ । ବାହ୍ମର ବିଧାନ କ୍ଷୟ ଗଲା ଦୁଷ୍କୃତ ॥ ଏବେ ଘେନ ଆସ ଯାଇ ପାଣ୍ଡବ ଅର୍ଜ୍ଜୁନ । ଏ ରୂପ ଛାଡ଼ିବ ମୁଁ ବୋଇଲେ ନାରାୟଣ ॥ ଶୁଣିକରି ଶବର ଯେ ବେଗେ ଚଳିଗଲା । ବୃନ୍ଦାବନରେ ଯାଇ ପ୍ରବେଶ ହୋଇଲା ॥ ହରି ଆଜ୍ଞା ଯୁଧିଷ୍ଠିରଙ୍କି କହିଲା ବୁଝାଇ । ଅର୍ଜ୍ଜୁନକୁ ଦେବ ବେଗେ ଦିଅ ପଠିଆଇ । ତାହା ଶୁଣି ଯୁଧିଷ୍ଠିର ଯେ ସହଦେବ ଭାଇ କହ ମନ୍ତ୍ରୀ ଚୂଡ଼ାମଣି ହରି ଛନ୍ଦ କାହିଁ । ତାହା ଶୁଣି ସହଦେବ ହସ୍ତକୁ ଚାହିଁଲା । ଶୁଣ ଦେବ ଧର୍ମରାୟ ବୋଳାଣ ବୋଇଲା ॥ ଜରା ଶବର ଯେ ତାଙ୍କୁ ବିନ୍ଧିଅଛି ବାଣ । ଅର୍ଜ୍ଜୁନ ଯେ ଚଳେ ହରି ଛାଡ଼ିବେ ପରାଣ ॥ ଯୁଧିଷ୍ଠିର ବୋଇଲେ ବାବୁ ଧନଞ୍ଜୟ ଯିବୁ । ବାସୁଦେବ ଡାକଲେ କେବେହେଁ ନ ଛୁଇଁବୁ ॥ ଆଗରେ ଶବର

Digitized by srujanika@gmail.com

ପଛେ ବୀର ଅରଜୁନ । ପ୍ରବେଶ ହୋଇଲେ ଆସି ଗୋବିନ୍ଦ ଚରଣ ॥ ଶଙ୍ଖଚକ୍ର ଗଦ ପଦ୍ମ ଦିଶୁଅଛି କର । ପଦ୍ମାକ୍ଷ ଅଛନ୍ତି ଦେବ ଶ୍ରୀଅଙ୍ଗ ଲଚାର ॥ ଶରେ ନାରାଚ ବାଜନ୍ତି ପାଦପଦ୍ମେ ଯାଇ । ଅର୍ଜ୍ଜୁନ ଦର୍ଶନ କଲା ଝଣ୍ଡେ ଦୂରେ ରହି । ଜଗନ୍ନାଥ ଡାକଲେ ହେ ପାଣ୍ଡବ ଅର୍ଜ୍ଜୁନ । ମୋତେ କୋଳାଗ୍ରତ କର ମୋର ପଞ୍ଚପ୍ରାଣ ॥ ନାରାଚ ବାଜଣ ଦେହ ହୋଇଛି ପ୍ରଜ୍ୱଳ ତୋର ଶରୀର ଲାଗି ପାର୍ଥ ହୋଇବ ଶୀତଳ ॥ ତୁମ୍ଭେ ସିନା ମୋହର ମାଉସୀ ପୁଅ ଭାଇ । ତୁମ୍ଭ ଚହୁଁ ସଖା ମୋର ଆନ କେହି ନାହିଁ । କରଯୋଡ଼ି ଯୋଡ଼ଣ ଅର୍ଜ୍ଜୁନ ବୋଲେ ମୁହିଁ । ତୁମ୍ଭଙ୍କୁ ଛୁଇଁବାକୁ ଯୁଧିଷ୍ଠି ଆଜ୍ଞା ନାହିଁ ॥ ଜଗନ୍ନାଥ ବୋଇଲେ ତୁ ହୋଇଲୁ କି ବାଇ । ଏହା କେମନ୍ତେ କହିଲେ ଯୁଧିଷ୍ଠି ଗୋସାଇଁ ॥ କେଉଁଠାରେ କେତେ ହିତ କରି ନାହିଁ ତୋତେ । ପ୍ରାଣ ଗଲାବେଳେ ପାର୍ଥ ହେଉଅଛୁ ମୋତେ ॥ ଛୁଇଁବାକୁ ସିନା ଯୁଧିଷ୍ଠିଙ୍କ ଆଜ୍ଞା ନାହିଁ । ଧନୁହୁଳ ଗୋଟି ମୋତେ ଦିଅ ତୁ ବଢ଼ାଇ ॥ ଜଗନ୍ନାଥ ଛନ୍ଦ ପାର୍ଥ ଜାଣି ନ ପାରିଲା । ପ୍ରଭୁଙ୍କ ଆଡ଼କୁ ଚହୁଁ ଧନୁ ବଢ଼ାଇଲା ॥ ଗାଣ୍ଡିବ ଧନୁରେ ବାସୁଦେବ ଦେଲେ ହସ୍ତ । ତତକ୍ଷଣ ଦେହରୁ ଗୁଡ଼ିଲା ପଞ୍ଚଭୂତ ॥ ମୃତ ପିଣ୍ଡ ଗୋଟି ପାର୍ଥ ହସ୍ତରେ ଧଇଲା । ହରି କେଣେ ଗୁଡ଼ିଗଲୁ ବୋଲିଣ ବୋଇଲା ॥ ଏମନ୍ତ ପ୍ରବେଶ ହେଲେ ଯୁଧିଷ୍ଠି ଗୋସାଇଁ ବାସୁଦେବ ଦେଖିଣ କାନ୍ଦିଲେ ପାଞ୍ଚଭାଇ ॥ ଯୁଧିଷ୍ଠି ବୋଇଲେ ବାକୁ କି ବୁଦ୍ଧି କରିବା । ଅଗ୍ନି ଦିଅଇଣ ବାସୁଦେବଙ୍କୁ ପୋଡ଼ିବା ॥ ଦେବତାଏ ଡାକଦେଲେ ଆକାଶରେ ଥାଇ । ନଷ୍ଟ ବାଇ ହୋଇଲେ ପାଣ୍ଡବ ପାଞ୍ଚଭାଇ ॥ ସମୁଦ୍ରେ ମେଲିଣ ଦିଅ ପ୍ରଭୁ ଦେବରାଜା । କଳିଯୁଗେ ପାଇବେ ସେ ଦାରୁବ୍ରହ୍ମ

Digitized by srujanika@gmail.com

ପୂଜା ॥ ଶୁଣ ହୋ ବ୍ରାହ୍ମଣ ଗୋଟି ଶବର ବୋଇଲା । ଏମନ୍ତ କରଣ ପିତା ହରଙ୍କୁ ମାଇଲ । ତାହାର ନନ୍ଦନ ବସୁ ଶବର ଯେ ମୁହିଁ । ମୋ ଝିଅ ବଶ ନୋହିଲେ ତୁ ବର୍ତ୍ତିବୁ ନାହିଁ । ତାହା ଶୁଣି ବ୍ରାହ୍ମଣ ଯେ ସ୍ତବ୍ଧ ହୋଇଲା । ଆଣ ତୋ ଝିଅକୁ ବଶ ହୋଇବ ବୋଇଲା ॥ ତାହା ଶୁଣି ଶବର ଯେ ମନ୍ଦରେ ପଶିଲା ଲଳିତା କୁମାରୀକୁ ସୁବେଶ କରାଇଲା ॥ ହରିଡ଼ା ବାହାଡ଼ା ଫଳ-ଗୁଡ଼ାଏ ଆଣିଲା । ବ୍ରାହ୍ମଣ ଗୋଟିକୁ ଝିଅ ସମର୍ପିଣ ଦେଲା ॥ ବଣର ଶବର ମୁଁ ଯେ ବାକ୍ୟ ନ ଜାଣଇ । ତୋର ସୁଖେ ବଶ ହୁଅ ସୁନ୍ଦର ଗୋସାଇଁ ॥ ଶବର ଝିଅ ଯେ ବହେ ପ୍ରେମ ପ୍ରଦାନ ହୋଇଲା । ବଦ୍ୟାପତି ବ୍ରାହ୍ମଣ ଯେ ଛ'ମାସ ରହିଲା । ଲଳିତା କୁମାରୀ ତୁଲେ ଲାଗିଲା ରହଣୀ । ଶବର ଦୁହିତା ଯେ ହୋଇଲା ଗର୍ଭବାସ ॥ ପ୍ରତିଦିନ ଶବର ଯେ ଘରେ ବସିଥାଏ । ଗ୍ରହ ଘଡ଼ିଏକ ଥାଉ ବାହାରକୁ ଯାଏ ॥ ଏମନ୍ତେଣ ବିପ୍ର ଚିନ୍ତି ମନେ ବିଚାରଇ । ବ୍ରାହ୍ମଣ ବୋଲେ ଶବର କେଣିକି ଯେ ଯାଇ ॥ ଏତେ ବୋଲି ବ୍ରାହ୍ମଣ ଯେ କ୍ଷୀଣକଲା ଦେହୀ । ବ୍ରାହ୍ମଣ ମୁହଁକୁ ଚାହିଁ ଲଳିତା ବୋଲଇ ॥ କିମ୍ପାଇଁ ହେ ପ୍ରାଣନାଥ ଏମନ୍ତ ହୋଇଲା । ଦିନକୁ ଦିନ ତୁମ୍ଭର ଦେହ କ୍ଷୀଣ ହେଲା ॥ ବନସ୍ତରେ ତୁମ୍ଭଙ୍କୁ ତ କଷ୍ଟ ନ ମିଳଇ । ବ୍ରାହ୍ମଣ ବୋଇଲା ମୁଁ ଚ୍ଛଳଇ ଯହିଁ ପାଇଁ । ଏହିକଥା ଗୋଟି ମୋତେ କହିବ ବୁଝାଇ । ପ୍ରତିଦିନ ପିତା ତୋର ଯାଏ କେଉଁଠାଇଁ ॥ ଗ୍ରହ ଘଡ଼ିକରୁ ସେହି ହୁଅଇ ବାହାର । ମଧ୍ୟାହ୍ନ କାଳରେ ଆସି ପ୍ରବେଶଇ ଘର ॥ କର୍ପୂର କସ୍ତୁରୀ ତ ର ଦେହେ ବାସୁଥାଇ । ଏହିକଥା ପାଇଁ ଦେହ କ୍ଷୀଣ କଲି ମୁହିଁ ॥ ଲଳିତା ବୋଲଇ ତୁମ୍ଭେ ଚ୍ଛଳ କାହିଁ ପାଇଁ । ଏହି କଥାଗୋଟି ତୋତେ କହିବା ମଣାଇ ॥ ଯେଉଁଠାରେ ନୀଳମାଧବଙ୍କ

Digitized by srujanika@gmail.com

ରୁପ ଥାଇ । ସେଠାରେ ପିତା ମୋହର ପୂଜା କରେ ଯାଇ ॥ ପିତାଙ୍କୁ କହିଣ ପଠିଆଇବ ମୁଁ ତୋତେ । ଚର୍ମ ନୟନରେ ତୁ ଦେଖିବୁ ଜଗନ୍ନାଥେ । ଏତେ କହି ଲଳିତା ଯେ ବେଗେ ଚଳିଗଲା । ଶବର ମଢରେ ଯାଇ ପ୍ରବେଶ ହୋଇଲା ॥ ବୋଲଇ ଲଳିତା ଶୁଣ ମୋହର ପିଅର ॥ ଜୁଆଇଁ ଗୋଟିକ ତ ମରୁଅଛି ତୋର ॥ ଶବର ବୋଲେ ଜୁଆଇଁ ମରୁଛି କପାଇଁ । ଲଳିତା ବୋଇଲା ଦିଅଁ ଦେଖିବାର ପାଇଁ ॥ ତାହା ଶୁଣି ଶବର ଯେ ସ୍ତବ୍ଧ ହୋଇଲା । ଦିଅଁ ଏଥି ଥିବାର ଯେ କେମନ୍ତେ ଜାଣିଲୁ ॥ ଆମ୍ଭେ ଆମ୍ଭେ ଲଳିତା ତୁ ମନ୍ଦ କୃତ୍ୟ କଲୁ । ଦିଅଁ ଅଛି ବୋଲି ତାଙ୍କୁ ଜଣାଇ କହିଲୁ । ଗୁପତରେ ପୂଜୁଥିଲି ଦେବ ନାରାୟଣ । ଦିଅଁଙ୍କୁ ଯେ ଲୋଡ଼ା କଲା ରାଜା ଇନ୍ଦ୍ରଦ୍ୟୁମ୍ନ ॥ ନ ପୁଣ ଜୁଆଇଁ ମୋର ଦୂତ ଆସିଥାଇ । ଇନ୍ଦ୍ରଦ୍ୟୁମ୍ନଙ୍କୁ ନେଇ ଆଣିବ କଢ଼ାଇ ॥ ଆଜ କି ଜୁଆଇଁ ମୋର ସ୍ଥିର ହୋଇଥିବ । ରାସ ପାଇଲେ ସେ ବିଶ୍ୱନାଥଙ୍କୁ ଦେଖିବ ॥ ଦିଅଁ ଦେଖାଇବି ବାଟ ଦେଖାଇବି ନାହିଁ । ଅନ୍ଧପଟଳ ଗୋଟି ଯେ ମୁଖେ ଥିବ ଦେଇ ॥ ଏତେ ବୋଲି ଲଳିତା ଯେ ବାହୁଡ଼ି ଅଇଲା । ବିଦ୍ୟାପତି ବ୍ରାହ୍ମଣଙ୍କୁ ମଣାଇ କହିଲା ॥ ଆଜହୁଁ ପଣ୍ଡ୍ରୀଏ ତୁମ୍ଭେ ସ୍ଥିର ହୋଇଥିବ । ରାସ ପାଇଲେ ଯେ ବିଶ୍ୱନାଥଙ୍କୁ ଦେଖିବ । ଦିଅଁ ଦେଖାଇବ ବାଟ ଦେଖାଇବ ନାହିଁ । ଅନ୍ଧ ପଟଳ ଗୋଟିକ ମୁଖେ ଥିବ ଦେଇ ॥ ମାଢ ତିଳ ସୋରିଷ କାନରେ କାନ୍ଧ ଥିବେ ଯେତେଦୂର ପିତା ମୋର କଢ଼ାଇଣ ନେବେ ॥ ଦୁଇ ପାଖେ ମାଢତିଳ ସୋରିଷ ବୁଣିବ । ଦିନ ଆଠ ଦଶକୁ ସେ ଗଛ ହୋଇଥିବ ॥ ଯେତେଦୂର ପିତା ମୋର କଢ଼ାଇଣ ନେବ । ଏ ପ୍ରକାରେ ତୁମ୍ଭେ ବିଶ୍ୱନାଥଙ୍କୁ ଦେଖିବ ॥ ପିତା ମୋ ତୁମ୍ଭଙ୍କୁ ବାଟ

Digitized by srujanika@gmail.com

ଦେଖାଇବ ନାହିଁ । ତୁମ୍ଭେ ଜଗନ୍ନାଥଙ୍କୁ ଦେଖିବ ଏକାଯାଇ ॥ ତାହା ଶୁଣି ବ୍ରାହ୍ମଣ ଯେ ଆନନ୍ଦ ହୋଇଲେ । କଷ୍ଟେ କଷ୍ଟେ ଦେଖିବି ମୁଁ ମନେ ବିଚାରିଲେ ॥ ଭଲ ପୁଣ୍ୟ କରିଥିଲା ଇନ୍ଦ୍ର ଯେ ଦ୍ୟୁମନ । ତାହାପରେଣ ଦେଖିବ ସେ ପ୍ରଭୁ ନାରାୟଣ ॥ ପୁଣି କୃଷ୍ଣଦାସ ଏହା ମଣାଇ କହିଲେ । ଏମନ୍ତ ସମୟେ ତହିଁ ରଜନୀ ପାଇଲେ । ଶବର ଦୁଆରେ ଯାଇ ବ୍ରାହ୍ମଣ ହୋଇଲେ । ଯିବାଟିକ ଶବର ହୋ ବୋଲିଣ ବୋଇଲେ ॥ ତାହା ଶୁଣି ଶବର ସେ ବାହାର ହୋଇଲା । ଅନ୍ଧଖୋଳ ଗୋଟିକ ତା ମୁଖରେ ବାନ୍ଧିଲା ॥ ଯେତେଦୂର ବ୍ରାହ୍ମଣଙ୍କୁ ନେଉଛି କଢ଼ାଇ । ଲଙ୍କତା କୁମାରୀ ଅଛି ମାଗିକିଳ ଦେଇ ॥ ଦୁଇ ପାଖେ ମଧିକିଲ ଦେଇଛି ପକାଇ ପ୍ରବେଶ ହୋଇଲେ ନୀଳ କନ୍ଦରେଣ ଯାଇ । ଅନ୍ଧପୁଟୁଳି ଗୋଟିକ ଘେନିରୁ କାଢିଲେ । ଦିଅଁ ଦେଖି ଅହେ ବିପ୍ର ବୋଲିଣ ବୋଇଲେ । ଏହି ଦେଖ ଦିଅଁ ବୋଲି ବତାଇଲା ହାତ । ବଟତଳେ ଶୋଇଛନ୍ତି ପ୍ରଭୁ ଜଗନ୍ନାଥ ॥ ଦେଖିକରି ବ୍ରାହ୍ମଣ ଯେ ଆନନ୍ଦ ହୋଇଲା । ନମସ୍କାର ନମସ୍କାର ବୋଲିଣ ବୋଇଲା ॥ ରହ ହେ ପାଣ୍ଡବ ବୋଲି ଶବର କହିଲା । କନ୍ଦମୂଳ ଆଣିବାକୁ ଦୂରକୁ ଗମିଲା ॥ ଏହାକ ହୋଇଣ ତହିଁ ରହ ବଦ୍ୟାପତି । ଜଗନ୍ନାଥେ ନାନାବିଧ କରିଲାକ ସ୍ତୁତି । ବଟର ଡାଳରେ ବସି କାକ ରବୁଥିଲା । ଢୁଳାଇ ୨ କାକ କୁଣ୍ଡରେ ପଡ଼ିଲା ॥ ଚତୁର୍ଭୁଜ ହୋଇ କାକ ବୈକୁଣ୍ଠକୁ ଗଲା । ଦେଖି ବ୍ରାହ୍ମଣ କୁଣ୍ଡରେ ପଡ଼ିମନ କଲା ॥ ଚନ୍ଦନ ବଟରେ କାକ ଥାଇ ରବ ଦିଏ । ନ ପଡ଼ ବ୍ରାହ୍ମଣ ତୁ ହୋ ଏ ଉଚିତ ନୁହେଁ ॥ ଇନ୍ଦ୍ରଦ୍ୟୁମ୍ନ ରାଜା ଯେ କଲାକ ତୋତେ ଦୂତ । ତାକୁ ସମ୍ବାଦ ନ ଦେଇ କରୁଛ ଏମନ୍ତ ॥ ବାରତା ବୁଡ଼ାଇ ଯେବେ କୁଣ୍ଡରେ ପଡ଼ିବୁ ।

Digitized by srujanika@gmail.com

ସହସ୍ରେ ବରଷ କାଠ ବେଙ୍ଗ ହୋଇଥିବୁ ॥ ଶୁଣିକରି ବ୍ରାହ୍ମଣ ଯେ କୁଣ୍ଡେ ନ ପଡ଼ିଲା । କନ୍ଦମୂଳ ଗୁଡ଼ାଏ ଶବର ଆଣିଦେଲା ॥ ପ୍ରତି-ଦିନ କନ୍ଦମୂଳ ଦେଉଥାଏ ହାତେ । ହସ୍ତପାତି ଖାଉଥାନ୍ତି ପ୍ରଭୁ ଜଗନ୍ନାଥେ ॥ ସେ ଦିନ ଶବର ଯାଚି ଯାଚଣ ଫୁଟିଲା । କେବେହେଁ ଜଗନ୍ନାଥଙ୍କ ହସ୍ତ ନ ପାତିଲା ॥ ଶବର ବୋଲଇ ଦାଅଁ କମାଇଁ ରୁଷିଲୁ । କନ୍ଦମୂଳ ଯାଚିଲିଣି ହସ୍ତ ନ ପାତିଲୁ ॥ ଯେତେବେଳେ ଶବର ଯେ ବୋଲଇ ଏମନ୍ତ । ଶୂନ୍ୟେ ଥାଇ ଡାକଲେ ଯେ ପ୍ରଭୁ ଜଗନ୍ନାଥ । ଆହେ ବିସୁ ଶବର ତୁ ହୋଇଲୁ କି ବାଇ । ଏତେଦିନ ବଞ୍ଚିଥିଲୁ କନ୍ଦମୂଳ ଖାଇ ॥ ନୀଳ ଯେ ମାଧବ ରୂପ ଏଣିକି ଛାଡ଼ିବୁ । ଦାରୁବ୍ରହ୍ମ ରୂପ ଧରି ଦେଉଳେ ରହିବୁ ॥ ଭୋଗ କରିବାକୁ ଚିତ ହୋଇଲେ ଆମ୍ଭ ମନ । ଆମ୍ଭଙ୍କୁ ଲୋଡ଼ାକଲା ଯେ ରାଜା ଇନ୍ଦ୍ରଦ୍ୟୁମ୍ନ ତାହା । ଶୁଣି ଶବର ଯେ ସ୍ତବ୍ଧ ହୋଇଲା । ବ୍ରାହ୍ମଣ ମୁଖରେ ଅନ୍ଧପୁଟୁଳି ବାନ୍ଧିଲା ॥ ହାତଧରି ନିଜବାଟେ ବାହୁଡ଼ି ଅଇଲା । ଅପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲା ॥ ବ୍ରାହ୍ମଣ ଯେ ନିଜ ମନ୍ଦିରକୁ ଚଳିଗଲେ । ଯେ ଯାହାର କର୍ମପାଶେ ଅନ୍ନ ନ ଭୁଞ୍ଜିଲେ । ପ୍ରତିଦିନ ବ୍ରାହ୍ମଣ ଯେ ବସି ଭାବୁଥାଇ । କେମନ୍ତେ ମୁଁ ରାଜାଙ୍କୁ ବାରତା ଦେବି ନେଇ ॥ ଏତେବୋଲି ବ୍ରାହ୍ମଣ ଯେ ଦେହ କ୍ଷୀଣ କଲା । ବ୍ରାହ୍ମଣର ମୁଖ ଚାହିଁ ଲଳିତା ବୋଇଲା ॥ ଦିନକୁ ଦିନ ତୁମ୍ଭର ଦେହ କ୍ଷୀଣ ହେଲା । ବନସ୍ତରେ ତୁମ୍ଭଙ୍କୁ ତ କିଛି ନ ମିଳିଲା ॥ ବ୍ରାହ୍ମଣ ବୋଇଲେ ତୋତେ କହିବା ମଣାଇ । ମୋହ ରାଜ୍ୟେ ଲୋଡ଼ୁଛନ୍ତି ମୋର ବାପ ଭାଇ । ଲଳିତା ବୋଇଲେ ଧୀରେ ବ୍ରାହ୍ମଣଙ୍କୁ ଚାହିଁ । ଇନ୍ଦ୍ରଦ୍ୟୁମ୍ନର ଦୂତ ଆସିଛୁ ଗୋସାଇଁ ॥ ବ୍ରାହ୍ମଣ ବୋଇଲା ସଖୀ ଜାଣିଲୁ କେମନ୍ତେ । ବାପ ତୋର ନିଷ୍ଠୁର ସେଗୋ ମାରିବଟି ମୋତେ ॥ ଏହା ତୁ ପ୍ରକାଶ ସଖି ନକର ଭୁଇଁତେ ।

Digitized by srujanika@gmail.com

ରଖିଥାଅ ଏହି କଥା ମନରେ ଗୁପତ ॥ ଲଳିତା ବୋଇଲା ଭୁବନ ଭଲ କାହିଁପାଇଁ । ସ୍ୱର୍ଗ ଅପସର୍ଗ ଜାତ ହୋଇଅଛୁ ମୁହିଁ ॥ ବାପକୁ ଜଣାଇ କାଲି ପଠାଇବ ତୋତେ । ରାଜା ଇନ୍ଦ୍ରଦ୍ୟୁମ୍ନ ଅଣି ବାଅ ଚିନ୍ତାଏ । ଏତେ ବୋଲି ଲଳିତା ଯେ ବେଗେ ଚଳିଗଲା । ଶବର ମନ୍ଦରେ ଯାଇ ପ୍ରବେଶ ହୋଇଲା ॥ ବୋଇଲା ଲଳିତା ଶୁଣ ମୋହର ପିଅର । ତୁମ୍ଭର ଜୁଆଇଁ ଏବେ ଯିବେ ବାପଘର ॥ ତାହା ଶୁଣି ଶବର ଯେ ଆନନ୍ଦ ହୋଇଲା । କନ୍ଦମୂଳ ଗୁଡ଼ଏକ ତାକୁ ଆଣିଦେଲା ॥ ଖଣ୍ଡେଦୂର ପାଛୋଟି ଯେ ଆସିଲା ଶବର । କରିହ ଦୟା ରଖିଥିବ ମୋର ଦ୍ୱିଜବର ॥ ଆକାଶ ଗଣ୍ଡିକଠାରୁ ଶବର ଫେରିଲା । ମାଳବ ଦେଶକୁ ବୋଲି ବ୍ରାହ୍ମଣ ଚଳିଲା ॥ ଇନ୍ଦ୍ରଦ୍ୟୁମ୍ନର ଦୂତ ବୁଲଇ ରାଜ୍ୟରେ । ଡ଼ଗର ଯେ ଜଣାଇଲା ରାଜାଙ୍କ ଛାମୁରେ ॥ ଇନ୍ଦ୍ରଦ୍ୟୁମ୍ନର ଆଗରେ କହିଲା ଡଗର । ବିଦ୍ୟାପତି ବ୍ରାହ୍ମଣ ଯେ ଅଇଲେ ତୁମ୍ଭର ॥ ଶୁଣିକରି ରାଜନ ଯେ ଉଷତ ହୋଇଲେ । ହରଷ କି ସରସ ହୋ ବୋଲିଣ ବୋଇଲେ ॥ ଡଗର ବୋଇଲେ ଯାହା ଦେଖିଲ ରାଜନ ॥ ସେ ବ୍ରାହ୍ମଣ ଦେହେ ଅଛି ଶଙ୍ଖ ଚକ୍ର ଚିହ୍ନ । ତାହା ଶୁଣିଣ ରାଜନ ହରଷ ହୋଇଲା । ନିଶ୍ଚୟ ବ୍ରାହ୍ମଣ ମୋର ବିଷ୍ଣୁକୁ ଦେଖିଲା ॥ ଏମନ୍ତେଣ ତହିଁ ଯାଇ ମିଳେ ବିଦ୍ୟାପତି । ଆଦର କରିଣ ରାଜା ବସାଇଲେ କତି ॥ ଶିରେ କରଦେଇ ପୁଚ୍ଛା କଲେକ ରାଜନ । ବିଷ୍ଣୁକୁ ଦେଖିଲଟିକି ସୁବେଦୀ ବ୍ରାହ୍ମଣ ॥ ବ୍ରାହ୍ମଣ ଶୁଣି ସନ୍ତୋଷେ ଦେଖିଲି କହିଲା । କୋଟିଏ ଜନ୍ମ ମୋହର ନିସ୍ତାର ପାଇଲା ॥ ବ୍ରାହ୍ମଣ ବୋଇଲା ରାଜା ଦେଖିଲି ଗୁପତ । ବଟତଳେ ଶୋଇଛନ୍ତି ପ୍ରଭୁ ଜଗନ୍ନାଥ ॥ ତହିଁର ନିକଟେ ଅଛି ରୋହିଣୀର କୁଣ୍ଡ । କୋଟି କୋଟି ତୀର୍ଥମାନେ ହୋଇଛନ୍ତି ଗୁଣ୍ଡ ॥ ତାହା ଶୁଣି

Digitized by srujanika@gmail.com

ରାଜନ ସେ ମନ୍ତ୍ରୀକି ଡାକିଲା । ସୈନ୍ୟ ମୋର ସଜକର ବୋଲିଣ ବୋଇଲା ॥ ତେରଲକ୍ଷ ପଦାତିକ ସଜ ସେ ହୋଇଲେ । କରଯୋଡ଼ି ବିଦ୍ୟାପତି ବ୍ରାହ୍ମଣ ବୋଇଲେ ॥ ଏତେ ଥାଟ ଯାକ ସଜାଇଲୁ ସେ ରାଜନ । ଶଏପୁଣ ଯାଏ ଯହିଁ ଲାଗିଅଛି ବଣ ॥ ପିମ୍ପୁଡ଼ି ଚଳିପିବାକୁ ଯହିଁ ବାଟ ନାହିଁ । ଏତେବଡ଼ ଥାଟ ଘେନ ଯିବୁ କେଉଁଠାଇଁ ॥ ରାଜା ଆଜ୍ଞା ଦେଲେ ତହୁଁ ସବୁ ବଣ ହାଣ । ବଣ କଟାଇଣ ସେ ଦେଖିବା ନାରାୟଣ ॥ ଆଜ୍ଞା ପାଇଣ କୋଠିଆ ବଳ ସେ ଧାଇଁଲେ । ରାସ୍ତ ସେ ଦିବସ ତହିଁ ବଣ କଟାଇଲେ ॥ ମାଳ କନ୍ଦରକୁ ବୋଲି ପିଟାଇଲା ବାଟ । ପଛରେ ସେ ଇନ୍ଦ୍ରଦ୍ୟୁମ୍ନ ଚଳାଇଲେ ଥାଟ । ଥାଟ ସୈନ୍ୟ ଘେନ ରାଜା ଚଳାଇଣ ଗଲା । ଭୃତକେଶ୍ୱରଙ୍କଠାରେ ପ୍ରବେଶ ହୋଇଲା ॥ ନାରଦ ବୋଇଲେ ଇନ୍ଦ୍ରଦ୍ୟୁମ୍ନ ରାଜା ଶୁଣ । ଏହାକୁ ବୋଲନ୍ତି ରାଜା ଚଟେସାପୁଲା ନଈ ॥ ଚଟେସାପୁଲା ନଦୀରେ ତୁ ସ୍ନାନକୁ ସାରିବୁ । ଭୃତକେଶ୍ୱରଙ୍କୁ ଯାଇ ଦର୍ଶନ କରିବୁ ॥ ତହୁଁ ଇନ୍ଦ୍ରଦ୍ୟୁମ୍ନ ରାଜା ବେଗେ ଚଳିଗଲା । ଏକାମ୍ର କାନନେ ଯାଇ ପ୍ରବେଶ ହୋଇଲା ॥ ନାରଦ ବୋଇଲେ ଇନ୍ଦ୍ରଦ୍ୟୁମ୍ନ ରାଜନ । ଏହାକୁଟି ବୋଲି ରାଜା ଏକାମ୍ର କାନନ । ଗୋଟିଏକ ଊଣା ସେ କୋଟିଏ ଲିଙ୍ଗଅଛି ॥ ଗୁପତ ବାରାଣସୀ ଏ କହିଲେ ମହର୍ଷି । ଅସୁରଙ୍କୁ ମାରି ସେ ରହିଲେ ତ୍ରିଲୋଚନ । ତହୁଁ ନାମ ବହିଲା ସେ ଏକାମ୍ରକାନନ । ତହୁଁ ଇନ୍ଦ୍ରଦ୍ୟୁମ୍ନ ସେ ଚଳିଇଣ ଗଲା । କପୋତେଶ୍ୱରଙ୍କଠାରେ ପ୍ରବେଶ ହୋଇଲା । ନାରଦ ବୋଇଲେ ଏ କାଳନ୍ଦୀ ନାମେ ନଈ ଏଠାରେ ବର୍ଷା ରଖିଲେ ତ୍ରୈଲୋକ୍ୟ ଗୋସାଇଁ । ସେ ନଦୀରେ ପଶି ରାଜା ସ୍ନାନ ସାରିଲେ । ଶ୍ରୀମାଳକନ୍ଦରେ ଯାଇ ପ୍ରବେଶ ହୋଇଲେ ମାଳକନ୍ଦରକୁ ରାଜା ଉଠିବାର ବେଳେ । ନଭେ ଦେବ ସେ

Digitized by srujanika@gmail.com

ହୋଇଲେ ମନ୍ତ୍ରୀଗଣେ ॥ ମୋହଠାରୁ ବ୍ରହ୍ମାଣ୍ଡରେ ନାହିଁ ବଡ଼ରଜା ମୁହିଁସିନା କରାଇବ କଳିଯୁଗେ ପୂଜା ॥ ଏତେକ ବୋଲି ରାଜନ ମନେ ଗର୍ବ କଲେ । ଗରବ ଗଞ୍ଜନ ତାହା ଶ୍ରୀହରି ଜାଣିଲେ ॥ ବିଦ୍ୟାପତି ବ୍ରାହ୍ମଣଙ୍କୁ ରଜା ଅନାଇଲେ । ଦାଉଁ କେଉଁଠାରେ ଅଛି ବୋଲିଣ ବୋଇଲେ ॥ କହ ଦ୍ୱିଜବର ବୋଲି ରଜା ଆଜ୍ଞା ଦେଲେ । ବ୍ରାହ୍ମଣ ବୋଇଲେ ଦାଉଁ ଏହିଠାରେ ଥିଲେ ॥ ତୋତେ ଦେଖି ଜଗନ୍ନାଥ ଅବା ମାୟା କଲା । ଅନ୍ତର୍ଯାମୀ ନାଥ ତାହା ମନରେ ଜାଣିଲା ॥ ମନରେ ଯେ ଗର୍ବ ଜାଣି ଅନ୍ତର୍ଦ୍ଧାନ କଲେ । ଜଗନ୍ନାଥ ରୂପ ଗୋଟି ଦେଖିଛୁ ମୁଁ ଭଲେ ॥ ରଜା ବୋଇଲେକ ବଡ଼ ଅଭାଗା ଯେ ମୁହିଁ । ମୋତେ ଦେଖି ପଳାଇଲେ ଦୈତ୍ୟେଙ୍କ ଗୋସାଇଁ । ବ୍ରାହ୍ମଣ ବୋଇଲେ ଦାଉଁ ଶବର ପୂଜିଲା । ରାଣୀ ବୋଇଲେକ ସେହି ଶବରଙ୍କୁ ନେଲା ॥ କଢ଼ାଅ କଢ଼ାଅ ବାରେ ଆହେ ଦ୍ୱିଜବର । କେଉଁଠାରେ ବାସ କରିଅଛି ସେ ଶବର । ବିଦ୍ୟାପତି ବ୍ରାହ୍ମଣ ସେ କଢ଼ାଇଣ ନେଲା । ନୀଳକନ୍ଦରକୁ ଘୁରି କେତେ ସେନାଗଲା ॥ ଏହିଟି ଶବର ପଲ୍ଲୀ ରଜାଙ୍କୁ କହିଲେ । ଶବର ଟେକି ରଜା ନୟନେ ଦେଖିଲେ ॥ ଶବର ପଲ୍ଲୀକି ରଜା ସଇନ ବେଢ଼ିଲେ ॥ ଆମ୍ଭ ଦାଉଁ ଦେବାଇ ତୁ ଆଣିଲୁ ବୋଇଲେ ॥ ବନର ଶବର ସିନା ହୋଇଲା ଆରତ । ଆରତେ ଡାକିଲା ମୋତେ ରଖ ଜଗନ୍ନାଥ ॥ କନ୍ଦମୂଳ ଦେଇ ଦାଉଁ ପୂଜୁଥିଲି ତୋତେ । ପଳାଇବା ବେଳେ ଦାଉଁ ଧରାଇଲୁ ମୋତେ ॥ ବଣର ଶବର ସିନା ନ ଜାଣଇ କିଛି । ଅକାରଣେ ରଜା ମୋତେ ଧରି ନେଉଅଛି ॥ ଯେତେବେଳେ ସେ ଶବର ବୋଇଲେ ଏମନ୍ତ । ଶୂନ୍ୟେ ଥାଇଣ ଡାକିଲେ ପ୍ରଭୁ ଜଗନ୍ନାଥ ॥ ଆରେ ଇନ୍ଦ୍ରଦ୍ୟୁମ୍ନ ତୁହି ହୋଇଲୁ କ ବାଇ । ଶବର ଗୋଟିକୁ

Digitized by srujanika@gmail.com

ମୋର ଧରିଛୁ କମାଇ । ଶବର ଗୋଟିକ ମୋର ଛାଡ଼ିକରି ଯିବୁ । ମହେନ୍ଦ୍ରୀ ପର୍ବତେ ଯେ ଦେଉଳ ତୋଳାଇବୁ । ଦେଉଳ ତୋଳାଇ ରଜା ଲୋଡ଼ିବୁଟି ମୋତେ । ଯେଉଁଠାରେ ଲୋଡ଼ିବୁ ତୁ ଦେଖାଦେବି ତୋତେ । ଏସନକ ଡାକ ଯହୁଁ ରାଜନ ଶୁଣିଲା । ଶବରକୁ ଛାଡ଼ି ରାଜା ବିଜେ କରିଗଲା ॥ ବିନ୍ଧ୍ୟାଚଳ-ଠାରେ ଯାଇ ପ୍ରବେଶ ହୋଇଲା । ବଉଳାମାଳା ନାମେ ପଥର କଟାଇଲା ॥ ଯେଉଁଠାରେ କଲା ଘର ମୂଳଖମ୍ବ ପୋତି । ସେହିଠାରେ ରହିଲେ ଯେ ଋଷିଗଣପତି ॥ ସେହିଠାରେ ରହି ରାଜା ଋଷି ପଠାଇଲା । ମାଳକନ୍ଦରକୁ ଯେ ପଥର ବୁହାଇଲା ॥ ଶଙ୍ଖନାଭି ମଣ୍ଡଳେ ଦେଉଳ ତୋଳାଇଲା । ରାମକୃଷ୍ଣ ବୋଲି କରି ଗ୍ରାମ ବସାଇଲା ॥ ଷାଠିଏ ହାତ ଦେଉଳ ପାତାଳେ ପୋତିଲା । ଶତାଶହେ ହାତ ସେ ଦେଉଳ ଉଚ୍ଚ ହେଲା । ଦେଉଳ ଉପରେ, ଅଲାଣିବ ଧ୍ୱଜଜତ । କଳସ ଉପରେ ହେଲା ଚକ୍ର ସୁସଜ୍ଜିତ ॥ ଦେଉଳ ତୋଳାଇ ରାଜା ସୁନା ଛୁଆଁଇଲା ॥ ଶେଷକୁ ଯେ ରାଜା ଏହା ମନେ ବିଚାରିଲା । ଏତେ ବଡ଼ ଦେଉଳକୁ ତୋଳାଇଲି ମୁହିଁ । ପ୍ରତିଷ୍ଠା କରିବାକୁ ବ୍ରାହ୍ମଣ କେହି ନାହିଁ । ଦେଉଳ ପ୍ରତିଷ୍ଠା ପାଇଁ ବ୍ରାହ୍ମଣ ନୋହିଲେ । ବ୍ରାହ୍ମଣ ଆଣିବେ ବୋଲି ବ୍ରହ୍ମଲୋକେ ଗଲେ । ବ୍ରହ୍ମାଙ୍କ ତର୍ପଣ ବେଳେ ପ୍ରବେଶ ହୋଇଲେ । ତୀରେ କରଯୋଡ଼ି ପାଏ ପଡ଼ି ସେ ଶୋଇଲେ ॥ ରାଜାକୁ ଦେଖି ହସିଲେ ବ୍ରହ୍ମା ପ୍ରଜାପତି । କେଉଁକାର୍ଯ୍ୟେ ଆସିଅଛୁ ମଞ୍ଚର ନୃପତି ॥ ଇନ୍ଦ୍ରଦ୍ୟୁମ୍ନ ବୋଇଲା ଶୁଣିବା ଗୋସାଇଁ । ମାଳକନ୍ଦରେ ଅଇଲି ଦେଉଳ ତୋଳାଇ । ମୋହର ସଙ୍ଗରେ ପ୍ରଭୁ ମଞ୍ଚପୁର ଯିବ । ବଡ଼ ଦେଉଳକୁ ମୋର ପ୍ରତିଷ୍ଠା କରିବ ॥ ବ୍ରହ୍ମା ଆଜ୍ଞା ଦେଲେ ତୁ ଅଇଲୁ କେତେବେଳେ । ତର୍ପଣ ଅଞ୍ଜଳି

Digitized by srujanika@gmail.com

ମୁହିଁ ଧରିଅଛୁ କରେ ॥ ବସନ୍ତେ ରହିଥାଅ ରାଜା ତର୍ପଣ ସାରିବା । ତର୍ପଣ ସାରି ଦେଉଳ ପ୍ରତିଷ୍ଠା କରିବା । ବସନ୍ତେ ରହ ରାଜା ବୋଲି ହସ୍ତଠାରି ଦେଲେ । ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ନିକଟେ ବସିଲେ ॥ କଳିଯୁଗ ପ୍ରାପ୍ତେକ ଯେ ଗଲା ନବଯୁଗ । ଏତେକାଳ ଯାଏ ବ୍ରହ୍ମା ସାଧୁଛନ୍ତି ଯୋଗ ॥ ଶ୍ରୀମାଳଗିରି କନ୍ଦର ହେଲା ଝଡ଼ମୟେ ॥ ବାଲି ଉଡ଼ି ପଡ଼ିଲା ଯେ ଅଜାଣିଶି ଯାଏ ॥ ସୁରଦେବ ବୋଲି ଏକ ରାଜାଏ ହୋଇଲା । ତାହାର ନନ୍ଦନ ରାଜା ହୋଇ ପୁଣି ମଲା । ଯାହାର ନନ୍ଦନ ଗାଲମାଧବ ନାଚନ୍ତି । ମାଳଗିରି କଣ୍ଠକେ ସେ ଧରିଲାକ ଛତ୍ର ॥ ଗାଲମାଧବ ଯେ ତହିଁ ହୋଇଲାକ ରାଜା । ତାହାକୁ ଖଟିଲେ ଯାଇ ସକଳ ପରଜା ॥ ଶିଶୁ କୃଷ୍ଣଦାସ ଏହା ମଣାଇ କହିଲା ବ୍ରହ୍ମାଙ୍କ ଗୁମ୍ଫାରେ ଇନ୍ଦ୍ରଦ୍ୟୁମ୍ନ ରହିଲା କଥାରି ମହିମା ତୁମ୍ଭେ ଶୁଣ ହେ ସୁଜନ । ମାଳଗିରି ନିକଟକୁ ଲାଗିଅଛି ବଣ ॥ ମନ୍ତ୍ରୀର ମୁଖକୁ ଗାଲମାଧବ ଚାହିଁଲା । ସମୁଦ୍ରରେ ସ୍ନାନ ସାରି ମୃଗୟାକୁ ଗଲା ॥ ମୃଗୟା ସାରିଣ ରାଜା ଲେଉଟି ଅଇଲା । ଉଚ୍ଚ ବାଲି ଦେଖି ରାଜା ଘୋଡ଼ା ଦୌଡ଼ାଇଲା ॥ ଘୋଡ଼ାଗୋଟି ରଜା ଖୁରି କରାଉଣ ଥିଲା । ଘୋଡ଼ାର ଟାପୁରେ ନୀଳଚକ୍ର ଯେ ବାଜିଲା ॥ ରାଜାର ମନକୁ ଯେ ଲାଗିଲା ବଡ଼ଗରୁ । ଶୁଖିଲା ବାଲିରେ ମୋର ହାବୁଡ଼ିଲା ଦାରୁ ॥ କୋଡ଼ିଆ ଦଳକୁ ଗାଲମାଧବ ଗାଇଲା । ବାଲି କାଢ଼ ଏଥୁ ଲୋକ ବୋଲିଣ ବୋଇଲା ॥ ଘଡ଼ିଏକ ରହି ରାଜା ବାଲି କଢ଼ାଇଲା । ଖୋଳିଲା ବେଳକୁ ନୀଳଚକ୍ର ଯେ ବାଜିଲା ॥ ନୀଳଚକ୍ର ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଲା । ମୂଳ ସ୍ମରି କରି ସେ ଦେଉଳ ଖୋଳାଇଲା ॥ ଏଡ଼େ ବଡ଼ ଦେଉଳ ମୋ ବାପ କରାଇଲା । ମୋହର କର୍ମକୁ ଏବେ ଏମନ୍ତ ହୋଇଲା ॥ ଦେଉଳ ଭିତରେ ମୁଁ ଦେବତା

Digitized by srujanika@gmail.com

ବସାଇବ । ଦେବତା ବସାଇ ମୁଁ ଯେ ପୂଜା କରାଇବ । ଦେବତା ବସାଇବାକୁ ତହୁଁ ମନ କଲା । ଏମନ୍ତେଣ ବ୍ରହ୍ମାଙ୍କର ତର୍ପଣ ସରିଲା । ସ୍ଥିର ହୋଇ ଅନାଇଲେ ବ୍ରହ୍ମା ବେଦକଣ୍ଠ । କରଯୋଡ଼ ଅଛୁ ଇନ୍ଦ୍ରଦ୍ୟୁମ୍ନର ନୃପତି ॥ ବ୍ରହ୍ମାଏ ବୋଇଲେ ତୁ ଅଇଲୁ କେତେବେଳେ । ରାଜା ବୋଇଲେ ଅଇଲି ତର୍ପଣର କାଳେ । ମୋହ ସଙ୍ଗେ ସଙ୍ଗେ ବ୍ରହ୍ମା ମର୍ତ୍ତ୍ୟପୁରେ ଯିବ । ବଡ଼ ଦେଉଳକୁ ମୋର ପ୍ରତିଷ୍ଠା କରିବ ॥ ବ୍ରହ୍ମା ଆଜ୍ଞା ଦେଲେ ଆହେ ଯିବ ଯେବେ ମୁହିଁ । ତୋଳାଇଲୁ ଦେଉଳ ତୋହର ହୋଇନାହିଁ ॥ ଗାଲମାଧବ ଯେ ତହୁଁ ହୋଇଲାକ ରାଜା ତ ହାକୁ ଖଟିଲେ ଯାଇ ସକଳ ପରଜା ॥ ଶିଶୁ କୃଷ୍ଣ ଦାସ ଏହା ମଣାଇ କହଇ । ଗାଲମାଧବ ଯେ ତହିଁ ଛତ୍ର ଧରାଇଲା ॥ ବ୍ରହ୍ମାଙ୍କୁ ଘେନିଣ ଇନ୍ଦ୍ରଦ୍ୟୁମ୍ନ ଅଇଲା । ନୀଳକନ୍ଦରେଣ ଯାଇ ପ୍ରବେଶ ହୋଇଲା । ବ୍ରହ୍ମା ଆଜ୍ଞାଦେଲେ ଇନ୍ଦ୍ରଦ୍ୟୁମ୍ନ ହୋଇଯିବୁ । କାହାର ଦେଉଳ ଯାଇଁ ସାକ୍ଷୀଙ୍କି ପୁଚ୍ଛିବୁ । ତୋହର ହୋଇଲେ ଆମ୍ଭେ ପ୍ରତିଷ୍ଠା କରିବୁ । ଅନ୍ୟର ହୋଇଲେ ଆମ୍ଭେ ବ୍ରହ୍ମଲୋକେ ଯିବୁ ॥ ଶୁଣି ଇନ୍ଦ୍ରଦ୍ୟୁମ୍ନ ଯେ ବେଗେ ଚଳିଲେ । ଗାଲମାଧବ ପାଶୁରେ ପ୍ରବେଶ ହୋଇଲା ॥ ଇନ୍ଦ୍ରଦ୍ୟୁମ୍ନ ରାଜା ଯେ ପଚାରୁଛି ତହିଁ । ସତ କହ ଏ ଦେଉଳ କାହାର ଅଟଇ ॥ ଗାଲମାଧବ ବୋଇଲା ଦେଉଳ ମୋହର । ବସିକରି ଗଢ଼ାଇଲି ପଞ୍ଚ ମଣ୍ଡଳର ॥ ଇନ୍ଦ୍ରଦ୍ୟୁମ୍ନ ବୋଇଲା ଦେଉଳ ମୋହର । ଦେଉଳ ତୋଳାଇ ଗଲି ଯେ ବ୍ରହ୍ମଲୋକର ॥ ମୋହର ଦେଉଳ ଇନ୍ଦ୍ରଦ୍ୟୁମ୍ନ ବୋଇଲା । ଦୁଇ ରାଜାଙ୍କର ଏବେ କଳହ ହୋଇଲା । ବେଦବ୍ରହ୍ମା ଆସିଣ ମିଳିଲେ ତେତେବେଳେ । ଦୁଇ ରାଜାଙ୍କର କଳି ହୋଇବାର ବେଳେ ॥ ବ୍ରହ୍ମା ଆଜ୍ଞାଦେଲେ କଳି କର କାହିଁପାଇଁ । ଇନ୍ଦ୍ରଦ୍ୟୁମ୍ନ ବୋଲଇ

Digitized by srujanika@gmail.com

ଶୁଣିମା ଗୋସାଇଁ ॥ ଦେଉଳ ତୋଳାଇ ବ୍ରହ୍ମା ତୋତେ ଆଣିଲେ । ତର୍ପଣ ସାରିବା ଯାଏ ଦଣ୍ଡେ ରହିଥିଲ ॥ ବ୍ରହ୍ମା ଆଜ୍ଞା ଦେଲେ କଳି ନ କର ତେହ କେହି । ସତ କହ ଦେଉଳ ଯେ କାହାର ଅଟଇ ॥ କଉତୁକେ ପଚାରିଲେ ବ୍ରହ୍ମା ଦେବବରେ । ସତ୍ୟ କହ ଦେଉଳ ଯେ କାହାର ନକର । ଗାଲମାଧବ ବୋଲଇ ଦେଉଳ ମୋହର । ବ୍ରହ୍ମାଏ ବୋଇଲେ ସାକ୍ଷ୍ୟ ଅଛି କେ ତୋହର ॥ ଗାଲମାଧବ ବୋଇଲା ମୋର ସାକ୍ଷୀ ନାହିଁ । ତୋଳାଇଲା ଦେଉଳ ସାକ୍ଷୀ କାହିଁପାଇଁ ॥ ଇନ୍ଦ୍ରଦ୍ୟୁମ୍ନ ବୋଇଲା ମୋର ସାକ୍ଷୀ ଅଛି । କଳପ ବଟରେ ଯେଉଁ କାକ ବସିଅଛି ॥ ବ୍ରହ୍ମାଏ ବୋଇଲେ ରାଜା ଚାଲ ତା ବୁଝିବା । କାହାର ଦେଉଳ ବୋଲି ସାକ୍ଷୀକୁ ପୁଚ୍ଛିବା ॥ ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନ ଗାଲମାଧବ ଯେ ଚଲେ । କଳ୍ପବଟ ବୃକ୍ଷତଳେ ପ୍ରବେଶ ହୋଇଲେ ॥ ବ୍ରହ୍ମା ବୋଲେ ଅରେ ଭୁଷଣ୍ଡି କାକ ଭୁହି । ଶୁଣ ଶୁଣ କାକ ଗୋଟି ପଚାରୁଛି ମୁହିଁ ॥ ଜଜାଣି ସାଧନେ ଯେ ଭୁଷଣ୍ଡି କାକ ଥିଲା । ମଞ୍ଜମଣ୍ଡଳରେ ମୋତେ କେହୁ ଉକଦେଲା ॥ ବ୍ରହ୍ମା ବୋଇଲେ ଯେ ଆମ୍ଭେ ଅଟୁ ବେଦବର । ଆମ୍ଭଙ୍କୁ କଥା ନ କହୁ କାକଗୋଟି ଗୁର ॥ ଭୁହୋ କେଉଁ ବ୍ରହ୍ମା ବୋଲି ଭୁଷଣ୍ଡି ବୋଇଲା । କୋଟି କୋଟି ବ୍ରହ୍ମା ମୋର ଦେଖୁ ଦେଖୁ ଗଲା ॥ ସହସ୍ରେକ ମୁଖ ହୋଇ ବ୍ରହ୍ମା ଏକ ଥିଲା । ମୋର ଦେଖୁ ଦେଖୁ ସେହି ପାଞ୍ଚଢନେ ମଲା ॥ କାଲି ବସ୍ତୁ ନାଭିରୁ ଜୁ ହୋଇଅଛୁ ଜାତ । ଚ୍ଚାରିଗୋଟି ମୁଖ ବଡ଼ ଏଡ଼େ କେ ସିଦ୍ଧାନ୍ତ ! କୋଟି କୋଟି ବ୍ରହ୍ମା ଏହି ବଟତଳେ ଯାଇଁ । ରାମ ନାମ ଧରି ଏକା ରହିଅଛି ମୁହିଁ ॥ ବ୍ରହ୍ମାତ ବୋଇଲେ ଏକା ପରମୁଣ୍ଡା ଯାଇ । ସତକହ ଦେଉଳ ଏ କାହାର ଅଟଇ ॥ ବୋଇଲା ଭୁଷଣ୍ଡି କାକ ବ୍ରହ୍ମାଙ୍କୁ ଅନାଇ । ଦେଉଳ ଇନ୍ଦ୍ରଦ୍ୟୁମ୍ନ ଯାଇଛି ତୋଳାଇ ॥

Digitized by srujanika@gmail.com

ଗାଲ୍‌ମାଧବ ବୋଇଲ୍ ଦେଉଳ ମୋହର । କାକ ମିଛକହୁଅଛୁ ବ୍ରହ୍ମାଙ୍କ ଆଗର ॥ କାକ ଶୁଣି କହେ ଗାଲମାଧବଙ୍କୁ ଗୁହିଁ । କେତେଦିନୁ ହୋଇଅଛୁ ରାଜା ଏଠି ତୁହି ॥ ଦେଉଳ ତୋଳାଇ ରାଜା ବ୍ରହ୍ମା ଆଣି ଗଲ୍ । ବ୍ରହ୍ମାଙ୍କୁ ଆଣିବା ଯାଏ ତନ ରାଜା ମଲ୍ ॥ ଗାଲମାଧବ ବୋଇଲେ ହୋଇଲୁ କ ବାଇ । ଏମନ୍ତ କହିଲେ ମୁଁ ଦେଉଳ ନ ଛାଡ଼ଇ ॥ ଇନ୍ଦ୍ରଦ୍ୟୁମନ ବୋଇଲ୍ ରାଜା ହେଲୁ ବାଇ । ଆହୁରି ସାକ୍ଷୀଏ ତୋତେ ଭେଟାଇବୁ ନେଇ ॥ ଇନ୍ଦ୍ରଦ୍ୟୁମନରେ ବହୁ କୁର୍ମମାନ ଥାଇ । ବଡ଼ ଦେଉଳକୁ ସେ ପଥରଛନ୍ତି ବହି ॥ ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନ ଗାଲମାଧବହିଁ ଗଲେ । ଇନ୍ଦ୍ରଦ୍ୟୁମ୍ନରେ ଯାଇ ପ୍ରବେଶ ହୋଇଲେ । ସେଠାରେ କୁରୁମମାନେ ଖସ ଖାଉଥିଲେ । ଇନ୍ଦ୍ରଦ୍ୟୁମନକୁ ଦେଖି ଜଳରେ ପଡ଼ିଲେ । ବ୍ରହ୍ମା ଡ଼ାକନ୍ତି କୁର୍ମେ ହେ ପଳାଅ କାହିଁକି । ସାକ୍ଷୀ ତୁମ୍ଭେ ଅଟ ଆମ୍ଭେ ଆସିଛୁ ତହିଁକି ॥ ଦଣ୍ଡେ ରହ କୁର୍ମମାନେ ପଚାରଇ ମୁହିଁ । କୁର୍ମମାନେ ବୋଲୁଛନ୍ତି ବ୍ରହ୍ମାମୁଖ ଗୁହିଁ ॥ ଇନ୍ଦ୍ରଦ୍ୟୁମନ ସଙ୍ଗେ ଆସିଛି ଗୋସାଇଁ । ତାହା ଡରେ ପଳାଉଛୁ ନ ପାରିବୁ ରହି ॥ ବ୍ରହ୍ମାଏ ବୋଇଲେ ଏ ତୁମ୍ଭର କସ କଲ୍ । କୁର୍ମମାନେ ବୋଇଲେ ଏ କେତେ ଶାସ୍ତି ହେଲ୍ ॥ ଆମ୍ଭ ଲକ୍ଷେ କୁଟୁମ୍ବ ଯେ ଏହା ଯୋଗୁ ମଲେ । ବଡ଼ ଦେଉଳକୁ ସେ ପଥର ବୁହାଇଲେ ॥ ନଖ ନଖ ଗଲୁ ଦେବ ହେଉଅଛୁ ଜ୍ୱାଳା ତାହାକୁ ଦେଖିଣ ଆମ୍ଭେ ହେଲୁ ମଣ୍ଡଭୋଳା ॥ ବ୍ରହ୍ମା ବୋଇଲେ ଦେଉଳ ଅଟଇ କାହାର । କୁର୍ମେ ବୋଇଲେ ଦେଉଳ ଇନ୍ଦ୍ର-ଦ୍ୟୁମନର ॥ ଦେଉଳ ଗଢ଼ାକୁ ଆମ୍ଭେ ବହିଛୁ ପଥର । ସ୍ୱରୂପ କହିଲୁ ଆମ୍ଭେ ଶୁଣ ଦେବବର ॥ ଦେଉଳ ତୋଳଣ ରାଜା ତୋତେ ଆଣି ଚଲ୍ । ଗାଲମାଧବ ଯେ ତହୁଁ ବୋଲି କଢ଼ାଇଲ୍ ॥ ବ୍ରହ୍ମା ଆଜ୍ଞା ଦେଲେ ରାଜା ଏକଥା କେମନ୍ତ । ଗାଲମାଧବ ବୋଇଲ୍ ଏ

Digitized by srujanika@gmail.com

କଥା ସମ୍ମତ ॥ ବ୍ରହ୍ମା ଆଜ୍ଞା ଦେଲେ ମୋର ଅଧେ ପୂର୍ଣ୍ଣ ଅଛି । ମେଂଡଳ ଉପରୁ ଯେଣୁ ବାଲି ଉଠିଅଛି । ତୋହର ଦେଉଳ ମିଛ କହିଲୁ ଯେ ତୁହି । କଳିଯୁଗେ ବସିଥିବୁ ଅପୂଜା ଯେ ହୋଇ ॥ ଇନ୍ଦ୍ରଦ୍ୟୁମ୍ନ ରାଜା ଯେ ପଶ୍ଚିମ ଭାଗରେ । ଗାଲମାଧବ ରହିଲ ଦେଉଳ ବାହାରେ ॥ ଲଜ ପାଇଣ ଯେ ଗାଲମାଧବ ରହିଲ । ସେଠାରେ ଇନ୍ଦ୍ରଦ୍ୟୁମ୍ନ ଛତ୍ର ଉଡ଼ାଇଲ ॥ ବ୍ରହ୍ମାଙ୍କୁ ଘେନିଣ ଇନ୍ଦ୍ରଦ୍ୟୁମ୍ନ ଆଇଲ ॥ ନୀଳଗିରି ନିକଟରେ ପ୍ରବେଶ ହୋଇଲ ॥ ବ୍ରହ୍ମାମୁଖ ଚାହିଁ ଇନ୍ଦ୍ରଦ୍ୟୁମ୍ନ ବୋଲଇ ॥ ମୋହର ଭକତି ତୁମ୍ଭେ ଘେନହେ ଗୋସାଇଁ । କ୍ଷେତ୍ର ଖଣ୍ଡ ପ୍ରତିଷ୍ଠା ମୋ କରିବ ଯୁକତି । ଏହିଠାରେ ମର୍ତ୍ତ ଲୋକେ ହୋଇବେ ମୁକତି ॥ ବ୍ରହ୍ମା ବୋଇଲେ ଯେ ରାଜା ହୋଇଲୁ କି ବାଇ । କ୍ଷେତ୍ରପାଳ ପ୍ରତିଷ୍ଠାକୁ ମୋର କ୍ଷମା ନାହିଁ । କ୍ଷେତ୍ରମାନଙ୍କରେ ବର ଶ୍ରୀପୁରୁଷୋତ୍ତମ । ଏହା ପ୍ରତିଷ୍ଠା କରିବା କାହାର ଯେ କ୍ଷମ ॥ ରାଜା ବୋଲଇ ମୋ ଦେଉଳ ତୁ ପ୍ରତିଷ୍ଠା କର । ଚିରଯୁଗେ ରହିଥିବ ଦେଉଳ ମୋହର ॥ ବ୍ରହ୍ମାଏ ବୋଇଲେ ରାଜା ଏକଥା ଏମନ୍ତ । ମୂର୍ତ୍ତିମନ୍ତ ହୋଇଣ ବସିବେ ଜଗନ୍ନାଥ ॥ ଦେଉଳର ପ୍ରତିଷ୍ଠାକୁ ମୋର କ୍ଷମ ନାହିଁ । ଏହା କଥାରେ ପ୍ରତିଷ୍ଠା କରିବଇଁ ମୁହିଁ ॥ ଚକ୍ରର ଉପରେ ମୁହିଁ ବାଛଗଲେ ନେତ । ଦୂରୁ ଦେଖି ଲୋକମାନେ ହୋଇବେ ମୁକତି ॥ ଏଥୁ ଅନନ୍ତରେ କଥା ହୋଇଲାକ କସ । ଜଗନ୍ନାଥ ଆଜ୍ଞାକୁ କହିଲେ କୃଷ୍ଣଦାସ ॥ ଦେଉଳକୁ ଚାହିଁ ରାଜା ମଣୋହି ନକଲା । କରିବ ବୋଲି ଯେ ରାଜା କୁଶଶଯ୍ୟା କଲା । କୁଶଶଯ୍ୟା କରି ରାଜା ଶୋଇଲା ଯୁକତେ । ରାତ୍ର ଅର୍ଦ୍ଧଠାରେ ଭେଟ ହୋଇଲେ ଜଗନ୍ନାଥେ । ଠାକୁରେ ବୋଇଲେ ରାଜା ହୋଇଲୁ କି ବାଇ । ଦେଉଳ ତୋଳାଇ ରାଜା

Digitized by srujanika@gmail.com

ଶକ୍ର କାହ୍ନିପ ଭଁ ।। ବୋଇଲା ଏ ଦେଉଳରେ ଦେବତାଏ ନାହିଁ । କେବଳତା ଗୋଟିଏ ରାଜା ଭେଟିଅଛୁ ମୁହିଁ ॥ ଥାଅପୈନ୍ୟ ଘେନ ରାଜା ଚଳାଇଣ ଯିବୁ । ବାଙ୍କି ମୁହାଣରେ ଯାଇଁ ଦାରୁକୁ ଭେଟିବୁ ॥ ସ୍ୱପନ ଦେଖଣ ଇନ୍ଦ୍ରଦ୍ୟୁମନ ଉଠିଲା । ଥାଅ ସଜକର ବୋଲି ମନ୍ତ୍ରୀକ ବୋଇଲା ॥ ଥାଅ ସଜକର ରାଜା ଚଳାଇଣ ଗଲା । ବାଙ୍କି ମୁହାଣରେ ଯାଇଁ ପ୍ରବେଶ ହୋଇଲା ॥ ସମୁଦ୍ର କୂଳରେ ସୈନ୍ୟଯାନ୍ତ ନୃପଙ୍କର । ଦାରୁଗୋଟି ପଡ଼ିଅଛୁ ବାଙ୍କି ମୁହାଣର ॥ ପଶ୍ଚିମ ମୁରତ ବାମମୁଖୀ ହୋଇ ନଈ । ସେହିଠାରେ ସ୍ନାନ କଲେ ବ୍ରହ୍ମହତ୍ୟା ଯାଇ ॥ ଏମନ୍ତ ମହିମା ଯେ ଅଟଇ ସେହିଠାଇଁ । ଦାରୁରୂପେ ଲାଗିଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥ ସେଠାରେ ଇନ୍ଦ୍ରଦ୍ୟୁମନ ପ୍ରବେଶ ହୁଅଇ । ମନ୍ତ୍ରୀ ଯେ ବୋଇବା ରାଜା ଆସ୍ତ ଦାରୁ ଏହି । ଦାରୁ ଦେଖି ରାଜା ମନେ ବିଚାର କରଇ । କୋଟି କୋଟି ପାତକ ଯେ ଖଣ୍ଡିକଲି ମୁହିଁ ॥ ଦାରୁର ଆଦେକ ଯେ ପାଣିରେ ଅଛୁ ପଡ଼ି ॥ ଆରପାଖ ଦାରୁ ଯେ ପାଣିରେ ଅଛୁ ବୁଡ଼ି ॥ ଏହି ଅଟେ ଦାରୁବ୍ରହ୍ମ ବୋଇଲେ ରାଜନ । ଦାରୁପାକ ବିଶୁଅଛୁ ଶଙ୍ଖଚକ୍ର ଚିହ୍ନ ॥ ଦେଖି ଇନ୍ଦ୍ରଦ୍ୟୁମନ ଯେ ସାନନ୍ଦ ହୋଇଲେ । ପାଞ୍ଚସହସ୍ର ହସ୍ତୀ ସେ ଦାରୁରେ ଲଗାଇଲେ ।। ଦାରୁର ଉପରେ ପାଟ ଦଉଡ଼ି ବାନ୍ଧିଲେ । ଆଉ ଆଉ ହସ୍ତୀଙ୍କର ବେକରେ ଖଞ୍ଜିଲେ ॥ ତେର-ଲକ୍ଷ ପଦାତିବ ତହିଁରେକ ଗଲେ । ବଶାଦେହ ମାଲ ଯେ ମୂଳରେ ଧରିଲେ ।। ଷୋଳପଣ ସହିତରେ ମୂଳରେ ଧଇଲେ । ଏତେ ଲୋକ ଲାଗିଲେକ ଦାରୁ ନ ଚଳିଲେ ॥ ସକାଳୁ ଲାଗିଲେ ବେଳ ବୁଡ଼ିବାର ଯାଏ । ନଷ୍ଟକଲେ ରହିଲେ ଯେ ଦେବାଧି ଦେବରାୟେ ।। ରାଜାର ମନକୁ ଯେ ଲାଗିଲା ବଡ଼ ଚରୁ । ବାଙ୍କି ମୁହାଣରେ ଯେ ନ ଚଳିଲାକ ଦାରୁ । ଏତେ ବୋଲି

Digitized by srujanika@gmail.com

ରାଜା ଯେ ମନରେ ଚିନ୍ତା କଲେ । ଦାରୁକୁ ଜଗିଣ ରାଜା ସମୁଦ୍ରେ ରହିଲେ ॥ ଦାରୁକୁ ଜଗିଣ ରାଜା ହୋଇଲେ ଚିନ୍ତିତ । ରାତ୍ର ଅର୍ଦ୍ଧ ଠାରେ ଭେଟ ହେଲେ ଜଗନ୍ନାଥ । ଠାକୁର ବୋଇଲେ ରାଜା ହୋଇଲୁକ ବାଇ । ଆମ୍ଭଙ୍କୁ ଆସିଛୁ ରାଜା ଧୈର୍ଯ୍ୟ ତୋ ଦେଖାଇ ॥ ରାଜ୍ୟ ଲୋକମାନେ ଯେବେ ଲାଗିବେ ତୋହର । ସମସ୍ତେ ଲାଗିଲେ ଦାରୁ ନ ଚଳିବ ମୋର ॥ ରାତ୍ର ପାହିଲେ ଯେ ରାଜା ଏମନ୍ତ କରିବୁ । ସୁନାର ଶଗଡ଼ ଦାରୁ ପାଖେ ଲଗାଇବୁ ॥ ପାଟର ମୁରୁଳା ଗୋଟି ମୁଣ୍ଡରେ ବାନ୍ଧିବୁ । ଅଙ୍ଗ ସେବକ ସେ ବସୁ ଶବର ରାଇବୁ ॥ ମାଳ ଯେ ମାଧବ ରୂପେ ପୂଜାକଲା ମୋତେ । ସେ ଆସିଲେ ଯିବା ଯେ ବୋଇଲେ ଜଗନ୍ନାଥେ ॥ ସ୍ୱପନ ତେଜ ସେ ଚେତ ଉଠିଣ ବସିଲେ । ଚେତନା ପାଇଣ ରାଜା ମନ୍ତ୍ରୀ ହକାରିଲେ । ସୁନାର ଶକଟ ରାଜା ବେଗେ ଅଣାଇଲେ ॥ ସୁନାର ଶକଟ ଦାରୁ ପାଖେ ଲଗାଇଲେ । ଅଙ୍ଗ ସେବକ ଯେ ବସୁ ଶବରେ ଆଣିଲେ ॥ ଗଳାରେ କୁଠାର ଦେଇ ଶରଣ ପଶିଲେ । ଡାକଇ ଇନ୍ଦ୍ରଦ୍ୟୁମ୍ନ ଦାରୁରେ ଶରଣ । ଶରଣ ରଖିବେ ପ୍ରଭୁ ଦେବ ଭଗବାନ ॥ ଆପଣା ମୁଣ୍ଡରେ ରାଜା ବାନ୍ଧିଅଛି ପାଟ । ଦାରୁକୁ ଜଗିଣ ତହିଁ ରହିଅଛି ଥାଟ ॥ ପାଟର ମୁରୁଳା ମୁଣ୍ଡେ ବାନ୍ଧିଲେକ ନେଇ । ଆଡ଼କ ବସୁ ଶବର ଧଇଲେକ ଯାଇଁ ॥ ଆରଆଡ଼ ବିଦ୍ୟାପତି ବ୍ରାହ୍ମଣ ଧଇଲେ । ହରି ହରି ଶବଦରେ ବ୍ରହ୍ମାଣ୍ଡ ପୂରିଲେ ॥ ଆସ ଆସ ବୋଲି ଯେ ଦାରୁରେ ଦେଲେ ହାତ । ଶକଟ ଉପରେ ବିଜେ କଲେ ଜଗନ୍ନାଥ ॥ ବ୍ରାହ୍ମଣ ଡାକଇ ଦେବ ମହିମା ମହିମା । ଇନ୍ଦ୍ରଦ୍ୟୁମ୍ନ ଡାକୁଛି ଗୁହାରି ଶୁଣିମା ॥ ସେଠାବରୁ ଦାରୁ ରାଜା ଘେନିଣ ଚଳିଲେ । ଆଡ଼ପ ମଣ୍ଡପେ ଦାରୁ ବିଜେ କରାଇଲେ । ବ୍ରହ୍ମା ଥାଇ କରି ତହିଁ ଯାଗ କରାଇଲେ । ଯାଗବେଦୀ

Digitized by srujanika@gmail.com

ମାଡ଼ ତହିଁ ନୃସିଂହ ରହିଲେ ॥ ରାଜାର ରାଣୀ ଯେ ଗୁଣ୍ଡିଚା ରାଣୀ ଥିଲେ । ସେ ଗୁଣ୍ଡିଚା ରାଣୀ ଯେ ଗୁଣ୍ଡିଚା ପଟ କଲେ । ରାଜାଙ୍କୁ ବ୍ରହ୍ମାଣ ବଚନେ ରାଣୀ ପୁଚ୍ଛାକଲେ । କଥାଏ ମାଗିବ ଦିଅ ବୋଲିଣ ବୋଇଲେ ॥ ରାଣୀ ଯେ ବୋଇଲେ ରାଜା ମାଗିବ ମୁଁ ଏବେ । ଗୁଣ୍ଡିଚା ଘରେ ଚଢ଼ା ହୋଇବେ ଜଗନ୍ନାଥେ ॥ ରାଜାଏ ବୋଇଲେ ରାଣୀ ବୋଇଲେକ ରାଜା କରିଅଛ ସତ୍ୟ । ତହିଁ ଗଢ଼ାଇଲେ ଆସିବେ କ ଜଗନ୍ନାଥ ॥ ରାଣୀଏ ରାଜାଙ୍କୁ ଯହୁଁ ସତ୍ୟ ପଚାରିଲେ । ଗୁଣ୍ଡିଚା ନବରୁ ରାଜା ଦାରୁ ବୁହାଇଲେ । ଯେଉଁଠାରେ ବଳରାଜା ଦର୍ଶନ ପାଇଲେ । ବଳଗଣ୍ଡି ବୋଲି ଯେ ତହିଁର ନାମ ଦେଲେ ॥ ବିଭୀଷଣ ରାଜା ଆସି କଲେକ ଦର୍ଶନ । ଶୀତଳ ମଣୋହି ତହିଁ କଲେ ଭଗବାନ । ସେଠାବରୁ ରାଜା ଦାରୁ ଘେନାଇଣ ଗଲେ । ଚେଲୁଡ଼ ଖମ୍ବ ପାଖରେ ବଜେ କରାଇଲେ ॥ ଦାରୁକୁ ଅଣାଇ ରାଜା ମନ୍ତ୍ରୀଙ୍କ ଚାଇଲେ । ବଡେଇ ବନ୍ଧାଣୀମାନ ଡକାଅ ବୋଇଲେ ॥ ରାଜା ଆଜ୍ଞାପାଇ ମନ୍ତ୍ରୀ ବେଗେ ଚଳିଲେ । ସବୁ ଦେଶ ବଢ଼ାଇ-ମାନଙ୍କୁ ଅଣାଇଲେ ॥ ବଢ଼େଇ ବନ୍ଧାଣୀ ସବୁ ଦେଖିଲେକ ଯାଇ । ସେମାନଙ୍କୁ ଚାହିଁ ରାଜା ବୋଲୁଛନ୍ତି ତହିଁ । ଦାରୁବ୍ରହ୍ମ ଗଢିଦେବ ବୋଲିଣ ବୋଇଲେ । ବଢ଼େଇ ବୋଇଲେ ପ୍ରଭୁ ହାତ ଲୁଗା ଦେଲେ ॥ ଦାରୁବ୍ରହ୍ମ ଗଢିଦବୁ ଆଜୁ ଅଠଦିନେ ପଡ଼ ହାତ ରାଜା ତୁମ୍ଭେ ଦିଅ ହେ ବହନେ ॥ ରାଜା ବୋଇଲେ ଟଙ୍କା ସୁନା ଆଜ ହାତ । ନେଇ ଗଢିଦିଅ ବେଗେ ଦାରୁ ଜଗନ୍ନାଥ ॥ ଏତେ ବୋଲି ରାଜନ ଯେ ବଜେ କରିଲେ । କାଠକଟା ବଢ଼େଇଏ ମନେ ଗର୍ବ କଲେ ॥ କେ ବୋଲଇ

Digitized by srujanika@gmail.com

ଦାରୁବ୍ରହ୍ମ ସଙ୍କେ ଚଢ଼ିବା । କେ ବୋଲଇ ଦାରୁବ୍ରହ୍ମ ଦଣ୍ଡକେ ଚଢ଼ିବା ॥ ଆଉ କେ ବୋଲଇ ଦଶମାସେ ନିର୍ମାଣିବା । ରାଜାଙ୍କୁ ଭଣ୍ଡାଇ ଆମ୍ଭେ ଧନ ନେଉଥିବ ॥ ଶସ୍ତ୍ର ପୂଜା ହେବ ବୋଲି ରାଜାଙ୍କୁ କହିଲେ । ଅନେକ ଶୀତଳ ଦ୍ରବ୍ୟ କାଳିକାଙ୍କୁ ଦେଲେ ॥ ପାଞ୍ଚଦିନେ ତହିଁ ସେ ସେ ଶସ୍ତ୍ର ପୂଜା କରି । ଚଳିଲେ ବଢ଼ାଇଣି ସଙ୍ଗେ ଦାରୁ ଅନୁସରି । ଦାରୁବ୍ରହ୍ମ ପାଖେ ଯାଇ ପ୍ରବେଶ ହୋଇଲେ । ଦାରୁର ଉପରେ ସେ ନିହାଣ ବସାଇଲେ ॥ ନିହାଣ ଉପରେ ନେଇ ମୁଗୁର ପିଟିଲେ । ଦାରୁରେ ବାଜିଣ ସେ ନିହାଣ ଭାଙ୍ଗିଗଲେ । ଆଶ୍ଚର୍ଯ୍ୟ ଏହା ଦେଖି ସେ ହୋଇଲେ ବଢ଼ାଣି । ସାତ ପାଞ୍ଚ ବଢ଼ାଇ ବାରସି ହାଣି ହାଣି ॥ ଦାରୁ ଉପରୁ ସେ ଶସ୍ତ୍ର ଉଷୁଡ଼ି ପଡ଼ିଲେ । ଦେଖି ଉଦେ ବଢ଼ାଣିଏ ଚାହିଁକା ହୋଇଲେ ॥ ଏମନ୍ତ ସେ ଆଣ୍ଠ କାଠ ଦେଖିଲୁ ତ ନାହିଁ । ପରସ୍ପରେ ବଢ଼େଇଏ ହେଲେ କୁହାକୁହି ॥ କେ ବୋଲଇ ଦାରୁ ସେ ସମୁଦ୍ରେ ପଡ଼ିଥିଲା । ଲୁଣପାଣି ଖାଇକରି ଆଣ୍ଠ ସେ ହୋଇଲା ॥ କେ ବୋଲଇ ଦାରୁରେ ଶୀଉଳ ପଡ଼ିଅଛି । ତେଣୁକରି ଆମ୍ଭର ସେ ଶସ୍ତ୍ର ନ କାଟୁଛି ॥ କେ ବୋଲଇ ଦେଖିବା ହେ ନେଉଁଠାଇ ଧର । କେ ବୋଲଇ ମହାମେରୁ ସବୁହିଁ ଅଚଳ ॥ କେ ବୋଲଇ ଏହା କାହିଁ ପାଇଲେ ରାଜନ । ଦାରୁଗୋଟି ଦିଶୁଅଛି ଶଙ୍ଖଚକ୍ର ଚିହ୍ନ ॥ ଏମନ୍ତ ସମୟେ ତହିଁ ରାଜା ବିଜେ କଲେ । କେମନ୍ତେ ବଢ଼ାଇମାନେ ବୋଲିଣ ବୋଇଲେ ॥ ଯେଉଁ ସ୍ଥାନରେ ଅଛନ୍ତି ଦ୍ୱିଲକ୍ଷ ବଢ଼ାଇ । ଶ୍ରୀ ଦିନ ହେଲା ଦାରୁ ଗଢ଼ି ଦେଲେ ନାହିଁ ॥ ବଢ଼ାଇ ବୋଇଲେ ଏଥି ଶସ୍ତ୍ର ସେ ଭାଙ୍ଗିଲା । ରାଜା ଆଜ୍ଞା ଦେଲେ ଭୁମ୍ଭ ମରଣ ହୋଇଲା ॥ ବରଷକ ଭିତ

ଲୁଗା ଦେଖିଏ ଯେନତଲେ । ଆଗତ କଟେଣ ଦେଶ ଘୋଷ ଅନ୍ଧୋଗରେ ॥ ଆଜକ ଭିତରେ ଦାରୁ ଗଢ଼ିକର ଦେବ । ନୋହିଲେ ସବୁ ବଢ଼େଇ କାଲି ହାଣ ହେବ ॥ ଦଣ୍ଡ ଦେଇଣ ରାଜା ଝଟେ କଣଗଲେ । ଦ୍ୱିଲକ୍ଷ ବଢ଼ାଇ ଚହିଁ ବସିଣ ଭାବିଲେ ॥ କେ ବୋଲଇ ବାପ ଆରେ କେ ବୋଲଇ ଭାଇ । ନଷ୍ଟ ମୁଣ୍ଡ କାଟ ହେବ ଦ୍ୱିଲକ୍ଷ ବଢ଼ାଇ ॥ ଆଉ ଜଣେ ବୋଇଲା ତ ନଷ୍ଟଯୁ । କେ ବୋଲଇ କାହାର କୁଟୁମ୍ବ ବନ୍ଧୁ ଥିଲେ । ଦୁର୍ଗାଙ୍କର ସୂତ୍ର ସବୁ କରୁଥାଅ ଭଲେ ॥ ଆରେକ ବୋଇଲା ଆରେ ଏହା କାହିଁ ଥିଲା । ବଢ଼ାଇମାନଙ୍କୁ ଆଣି ଦାରୁ ହଣାଇଲା । ଏହା ଯୋଗୁ ମରୁଅଛୁ ଦ୍ୱିଲକ୍ଷ ବଢ଼ାଇ । ଏମନ୍ତ ଆଣ୍ଡ କାଠ ତ ଦେଖିଲା ତ ନାହିଁ ॥ ଏତେ ବୋଲି ବଢ଼ାଇ ଯେ ହୋଇଲେ ଆରତ । ଆରତେ ଡାକଲେ ପ୍ରଭୁ ରଖ ଜଗନ୍ନାଥ ॥ ତୁହି ନ ରଖିଲେ ପ୍ରଭୁ ଆଉ ରକ୍ଷା ନାହିଁ । ତୋତେ କେ ଗଢ଼ିବ ପ୍ରଭୁ ତ୍ରୈଲୋକ୍ୟ ଗୋସାଇଁ । ଏତେ ବୋଲି ବଢ଼ାଇ ଯେ ଡାକଲେ ଆରତେ । ତକ୍ଷଣେ ବଢ଼େଇ ରୂପ ଧରି ଜଗନ୍ନାଥେ ॥ ବଢାଇ ପଣକୁ ନାଥ ପରମୁଣ୍ଡା ଯାଇ । ଗୋଡ଼ ଦୁଇ ଗୋଦର ଯେ ପିଠି କୁଜା ହୋଇ । ଦୁଇ ଆଖିରୁ ଲେଞ୍ଜିବ ଯାଉଅଛି ବହି । ପାଟିରେ ବୁଢ଼ାର ଦାନ୍ତ ଗୋଟିଏକ ନାହିଁ ॥ ଚାଲୁଅଛି ବୁଢ଼ାଗୋଟି ଥରଥର ହୋଇ । ନହାଣ ବାଟସି ତାର କାଖେ ଅଛି ରହି । କପାଳରେ କାଟିଅଛି ବଢ଼ାଇଙ୍କ ଟଟା । କାନ୍ଧରେ ପକାଇ ଅଛି ମାପିବାର ସୂତା ॥ ନହାଣ ଗୋଟିକ ବୁଢ଼ା ଅଣ୍ଟାରେ ଖୋସିଛି । ମୁଗୁର ଗୋଟିକ ବୁଢ଼ା କାଖରେ ଜାକଛି ॥ ଘରେ ଘରେ ପଗ୍ଭରନ୍ତ ଦେବ ନାରାୟଣ । କେ କସ ଚଢ଼ାଇବ ଯେ ବଷ୍ଟୁର

Digitized by srujanika@gmail.com

ପାଷାଣ ॥ ରଜା ସିଂହଦ୍ୱାରେ ଯାଇ ପ୍ରବେଶ ହୋଇଲେ । ରଜା ଆଗେ କହ ଦେବାଳ ଉପରେ କହିଲେ ॥ ଇନ୍ଦ୍ରଦ୍ୟୁମ୍ନ ରଜାକୁ କହିବୁ ବୁଝାଇ । କହ ସିଂହଦ୍ୱାରେ ଅଛୁ ପୁରୁଣା ବଢ଼ାଇ ॥ ହେବୁ ଅଣ୍ଟ କାଠ ବୋଲେ ମୋହର ଛୁଡ଼ଇ । ତାହା ଶୁଣି ଡ଼ଗର ଯେ ବେଗେ ଚଳିଯାଇ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗରେ ବାରତା କହିଲେ । ତାହା ଶୁଣିକରି ରଜା ଆନନ୍ଦ ହୋଇଲେ । ରଜାଏ ବୋଇଲେ ବୁଢ଼ା ବଢ଼ାଇକି ଆଣ । ଦେଖିବା ବୁଢ଼ା ବଢ଼େଇ ଦେହେ କେତେ ଟାଣ ॥ ଡ଼ଗରାଏ ଆସି ବୁଢ଼ା ବଢ଼ାଇ କି ନେଲେ । ରଜାଙ୍କ ଡାକରା ଆସ ବୋଲିଣ ବେ ଇଲେ । କେତେକ ଦୂରରେ ବୁଢ଼ା ବଢ଼ାଇ ଦିଶିଲ । ନାକେ ହସ୍ତ ଦେଇ ଇନ୍ଦ୍ରଦ୍ୟୁମ୍ନ ହସିଲେ ॥ ମନ୍ତ୍ରୀର ଆଡ଼କୁ ରଜା ନୟନ ଫେରାଇ । ଏତେବଡ଼ ବୁଢ଼ା ଦେଖ ଧାଏଁ ଧନପାଇଁ । କେତେକାଳୁ ବସି ଧାତା ଏହାକୁ ଗଢ଼ିଲ । ଗୋଡ଼ ଦୁଇ ଗୋଦଡ଼ ଯେ ପିଠ କୁଜା କଲ ॥ ଆସ ଆସ ବୁଢ଼ା ଗୋଟି ରଜା ଆଜ୍ଞା ଦେଲେ । ବୃଖଣ୍ଡେଦୁର ଯାଇ ବୁଢ଼ା ସାହସୀ ଉଠିଲେ ॥ ଆଣ୍ଠୁ ଆଣି କରି ରଜା କଟକେ ଆସିଲେ । ଇନ୍ଦ୍ରଦ୍ୟୁମ୍ନ ରଜାର କଟରେ ବସିଲେ । ରଜାଏ ବୋଇଲେ ବୁଢ଼ା କେଉଁ ରଜ୍ୟେ ଘର । ସତକରି କହ ତୁମ୍ଭେ କି କି ଜାଣିପାର । ଠାକୁରେ ବୋଇଲେ ରଜା କି ପଚ୍ଛର ତୁହି । ଆଣ୍ଟକରି କହ ରଜା ମୋତେ ଶୁଭୁ ନାହିଁ ॥ ରଜା ଆଜ୍ଞା ଦେଲେ ବୁଢ଼ା କହ ତୁମ୍ଭ ଘର । ସତକରି କହ ତୁମ୍ଭେ କାହାର କୁମର ॥ ଠାକୁରେ ବୋଇଲେ ଆମ୍ଭ ଘର ଦ୍ୱାରକା ର । ଜନ୍ମକାଳୁ ପିତା ମାତା ନାହିଁ ଯେ ମୋହର ॥ ନାମ ଶାଖାଆମ୍ଭର ଅନନ୍ତ ମହାରଣା । ଆଣକ ଠ ଦେଖି ଆମ୍ଭେ ବସୁ ଯେ ଧାରଣା ॥ ବିଶ୍ୱକର୍ମା ଅଟା ଆମ୍ଭେ ପୁରୁଣା ବଢ଼ାଇ । ସଜ ଅସଜମାନଙ୍କୁ ମୁହିଁ ଯେ ଗଢ଼ଇ ॥

Digitized by srujanika@gmail.com

ମୁଁ ସବୁ ଗଢ଼ିଲି ମୋତେ ନ ଗଢ଼ିଲେ କେହି । ଅପାର କାଳର ମୁଁ ଯେ ପୁରୁଣା ବଢ଼ାଇ ॥ ମତ୍ସ୍ୟ କୂର୍ମ ବରାହ ଯେ ନରସିଂହ ରୂପ । ଆମ୍ଭେ ବସି ଗଢ଼ିଲୁଁ ବାମନ ସ୍ୱରୂପ ॥ ଏବେ ମହାରାଜା ଧାଇଁ ଅଇଲୁ ଯୁବତ । ତୋ'ର ଦାରୁ ଗୋଟି ଗଢ଼ିଦେବୁ ଜଗନ୍ନାଥ ॥ ରଜାଏ ବୋଇଲେ ବୁଢ଼ା କାଣ କରିଥିବୁ । ଦାରୁ ଦେଖିଲେତ ଚକ୍ଷୁ ଚାଟକା ହୋଇବୁ । ଶୁମନ୍ତେଣ ବୁଢ଼ାର ହେ ଦେହ ଗୋଟି ସରୁ । କେମନ୍ତେ ଗଢ଼ିବୁ ମୋର ଏଡ଼େ ମୋଟ ଦାରୁ ॥ କେତେ ବଳ ଅଛୁ ବୋଲି ଦେଇହ ଦେଲେ ହସ୍ତ । ହତଜ୍ଞାନ ହୋଇଣ ପଡ଼ିଲେ ଜଗନ୍ନାଥ ॥ ଏହିକରି ବୁଢ଼ା ହାତ ଲେଉଟ ଲେଉଟ କଲା । ଦୁଇ ଆଖି ନେଇ ବୁଢ଼ା କପାଳେ ଖୋଷିଲା । ରାଜାଏ ବୋଇଲେ ବୁଢ଼ା ବଢ଼ାଇ ଯେ ମଲା । ମରିବ ବୋଲିଣ ବୁଢ଼ା ଲେଉଟଏ କହିଲା ॥ ଆହେ ବୁଢ଼ା ଗୋଟି ମୋତେ କେଣେ ଛାଡ଼ିଗଲୁ । ଆକୁଳ ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ ॥ ଜଗତେ ବୋଲିବେ ରଜା ଅପକୀର୍ତ୍ତି କଲା । ହାତଦେବା ମାତ୍ରେ ବୁଢ଼ା ବଢ଼େଇ ଯେ ମଲା ॥ ମନ୍ତ୍ରୀଙ୍କି ବୋଇଲେ ଖଟ୍ଟ ସଜାଡ଼ିବୁ ନେଇ । ବୁଢ଼ାର ସଙ୍ଗରେ ଅଗ୍ନି ଖାଇବଇଁ ମୁହିଁ ॥ ସେତେବେଳରେ ରାଜନ ବୋଲଇ ଏମନ୍ତ । ପଡ଼ିକରି ହସୁଛନ୍ତି ପ୍ରଭୁ ଜଗନ୍ନାଥ । ସତରେ କଷଣ ଯେତେ କରୁଛନ୍ତି ହରି । ବୁଝାମଣା ଦେଉଛନ୍ତି କଷି ଭୁଲକରି । ଆଲଟ ଯେନଣ ରାଜା ବାଞ୍ଛୁଛନ୍ତି ଚକ୍ଷୁ । ମିଠି ମିଠି କହୁଁଛନ୍ତି ତୈଲୋକ୍ୟ ଗୋସାଇଁ ॥ ରାଜାଏ ବୋଇଲେ ଉଠ ପୁରୁଣା ବଢ଼ାଇ । ଆସ ଆସ ଦାରୁବ୍ରହ୍ମ ଦେଖାଇବ ନେଇ ॥ ବୁଢ଼ା ବଢ଼େଇର ହାତ ଧରି ଯେନଗଲେ । ଗରୁଡ଼ ଖମ୍ବ ପାଖରେ ରୂପ ନଦେଖାଇଲେ ॥ ଦାରୁ ଜଗି ବସିଛନ୍ତି ହି ଲକ୍ଷ ବଢ଼େଇ । ରାଜା ଆଜ୍ଞା ଦେଲେ ଦେଖ ଆମ୍ଭ ଦାରୁ ଏହି ॥ ଆଡ଼ହୁଅ ବଢ଼ାଇ ଏ ବୁଢ଼ା

Digitized by srujanika@gmail.com

ଆଜ୍ଞା ଦେଲେ । କେତେ ମଞ୍ଜି ଅଛୁ ବୋଲି ନଖ ବୁଡ଼ାଇଲେ ॥ ନନ୍ଦଣ ବାଟେସି ପକ୍ଷୀ ଉପୁଜି ଚଢ଼ଇ । ନଖ ଯେବେ ଚଞ୍ଚୁ ବୁଢ଼ା ବକଳ ଛଡ଼ାଇ ॥ ବକଳଖଣ୍ଡିକ ଚଞ୍ଚୁ ଫୋପନ୍ଡାଇ ଦେଲା । ଇନ୍ଦ୍ରାଣୀ କୂଳରେ ଯାଇ ପ୍ରବେଶ ହୋଇଲା ॥ ଦାରୁବ୍ରହ୍ମଙ୍କ ବଚନ ଅଟଇ ଯେ ସେହି । ଯାଜପୁରେ ରହିଛୁ ବରାହ ମୂର୍ତ୍ତି ହୋଇ ॥ ତହିଁର ଘାଟରେ ଅଛୁ ଯାଉଁଳ ଯେ ବନ୍ଧ । ସେହିଠରେ ଦୁଇ ଆଖି ପାଇଲ ଯେ ଅନ୍ଧ ରାଜାର ଆଡ଼କୁ ବୁଢ଼ା ବଢ଼ାଇ ଚାହିଁଲ । ବଢ଼ାଇ ମାନଙ୍କୁ କମ୍ପା ଧଇଲୁ ବୋଇଲା ॥ ରାଜାଏ ବୋଇଲେ ଏ ଯେ ଘାତ ଲୁଗା ନେଲେ । ଆଗତ କରଣ ଦେଶ ଘୋଷହିଁ ପାଇଲେ ॥ ଶାଢ଼ୀ ସୁନାବଳା ଦେଲ ଏହାଙ୍କର ହସ୍ତେ । ଦାରୁବ୍ରହ୍ମ ଗଢ଼ିଦେବେ ପ୍ରଭୁ ଜଗନ୍ନାଥେ ॥ ସୁନାବଳା ପାଇ ଏ ଯେ ଆନନ୍ଦ ହୋଇଲେ । ଦାରୁ-ବ୍ରହ୍ମ ଗଢିବାକୁ କେହି ନ ପାରିଲେ ॥ ବୁଢ଼ା ବଢ଼ାଇ ବୋଲଇ ରାଜାଙ୍କୁ ଅନାଇଁ । ଏମାନଙ୍କୁ ଧରିଅଛ ଏହିକଥା ପାଇଁ ॥ ଦାରୁକୁ ମୁଁ ଗଢ଼ିଦେବି ଏ ଖାଇବେ ଘାତ । ବାହାରେ ଏ ଗଢ଼ିଦେବେ ନନ୍ଦଘୋଷ ରଥ ॥ ସେହି ନନ୍ଦଘୋଷ ରଥ ନିର୍ମାଣ କରିବେ । ବରଷକେ ତିନମୂର୍ତ୍ତି ବିଜୟ ହୋଇବେ ॥ ସେହି ଦେଗ ଦେ ଷମାନ ଖାଇବେ ଏ ଘାତ । ରଥେ ବସି ଗୁଣ୍ଡିଚ୍ଚ ବିଜୟ ଜଗନ୍ନାଥ ॥ ଏତେ ବୋଲି ବୁଢ଼ା ଗୋଟି ମଣାଇ କହିଲ । ତାହା ଶୁଣି ରାଜନ ଯେ ଆନନ୍ଦ ହୋଇଲା ॥ ଧର ଧର ଦାରୁ ରାଜା ଭିତରକୁ ନେବା । ବଡ଼ଦେଉଳରେ ନେଇ ଦାରୁକୁ ଗଢ଼ିବା ॥ ଧର ହେ ବଢ଼ାଇମାନେ ବୁଢ଼ା ଡାକ ଦେଲେ । ଦ୍ୱିଲକ୍ଷ ବଢ଼ାଇ ଧରୁ ଧରି ନ ପାରିଲେ ॥ ଝଶାଖହ ମାଲ ଷୋଳ ପାଇ ଯେ ଅଇଲେ । ଗରୁଡ଼ର ଖମ୍ବଠାରୁ ଟଳି ନ ପାରିଲେ । ବୁଢ଼ା ବଢ଼ାଇ ବୋଇଲେ ହୋଇଲ କ ବାଇ । ଦାରୁ ଖଣ୍ଡି ତୋଳିବାକୁ ଭୁମ୍ଭ ଶକ୍ତି ନାହିଁ ॥ ଆଡ଼ହଅ

Digitized by srujanika@gmail.com

ବଢ଼ାଇଏ ବୁଢ଼ା ଡାକ ଦେଲେ । ଆଉ କୋଳ କରି ବୁଢ଼ା ଦାରୁ ତୋଳି ନେଲେ ॥ ମହାଣ ବାରପି ତାଙ୍କ କାଖରେକ ଥାଇ । କାଖରେ ଯାକଣ ଦାରୁବ୍ରହ୍ମ ନେଲେ ବୋହି । ଚଳୁଡ଼ ଖମ୍ଭଠାରେ ଯେ ତୋଳି ଦେଖଠିଲେ । ବଡ଼ ଦେଉଳରେ ନେଇ ଦାରୁ ଓହ୍ଲାଇଲେ ॥ ରାଜାଙ୍କ ଆଉକୁ ଯେ ବଢ଼ାଇ ବ୍ରହ୍ମିଁଦେଲା । ଶୁଣ ହେ ଇନ୍ଦ୍ରଦ୍ୟୁମନ ବୋଲିଣ ବୋଇଲା । ଏକୋଇଶ ଦିନ ରାଜା ବ୍ରହ୍ମିଁଥିବୁ ମୋତେ । ଏକୋଇଶ ଦିନେ ଦାରୁ ଗଢ଼ିଦେବ ତୋତେ ॥ ଏକୋଇଶ ଦିନଯାଏ ଏଠି ନ ଆସିବୁ । ଏକୋଇଶ ଦିନ ଯେ କବାଟ ଫେଡ଼ିବୁ । ଏକୋଇଶ ଦିନ ଆନ ନୋହିବ ମୋହର । ଏହି କଥା ସତ୍ୟ ଭୁହ୍ୱ କର ନୃପବର ॥ ସାବଧ ନେ ଶୁଣ ଇନ୍ଦ୍ରଦ୍ୟୁମନ ନୃପତି । ଏକଦାରୁ ଗୋଟିକ ହୋଇବ ଯେତେ ମୂର୍ତ୍ତି ॥ ସତ୍ୟ ସତ୍ୟ ସତ୍ୟ କଲା ଇନ୍ଦ୍ର ଯେ ଦ୍ୟୁମନ । ରହିବ ବୁଢ଼ା ବଢ଼ାଇ ଏକୋଇଶ ଦିନ ଦାରୁକୁ ବୁଢ଼ା ବଢ଼ାଇ ଦେଉଳକୁ ନେଇ । କବାଟ ପାଡ଼ିଣ ରାଜା ମୁଦ କଲଦେଇ ଲୁହ୍ମ ଖଣ୍ଡା ମୁଦ ଦେଇ ବେଗେ ଚଳିଗଲା । ଏମନ୍ତ ସମୟେ ଯହିଁ ରଜନୀ ପାହିଲା ॥ ଦିନେ ଗଲା ବୋଲି ରାଜା ଗାରେକ କାଟିଲେ । ଗାରେକ କାଟିଣ ରାଜା ପାଞ୍ଜିରେ ଲେଖିଲେ ॥ ଏମନ୍ତେଣ ତହିଁ ଯେ ଚଉଦ ଦିନ ଗଲା । ରାଣୀ ଯେ ଦିବସ ତହିଁ ବସି ଭାବୁଥିଲା ॥ ସେତେହେଁ ଜୀବନ ମୋର ଚରିତ ନୋହିବ । କେତେବେଳେ ଦେଉଳର ଦିଅଁ ଗଢ଼ା ହେବ ମୋ ଜୀବନଥାଉ ଗୁଣ୍ଡିଚ୍ଛୁ ଘରକୁ ଆସିବ । ଏମନ୍ତେଣ ରାଣୀ ସେ ଯେ ସନ୍ତୋଷ ହୋଇବ ॥ ଚତୁର୍ଦ୍ଦଶ ଦିବସରେ ରଜନୀ ହୋଇଲା । ରାତ୍ରବେଳେ ରାଜାକୁ ଯେ ରାଣୀ ପୁଚ୍ଛାକଲା ॥ ରାଜାଏ ବୋଇଲେ ରାଣୀ ପରିମୁଣ୍ଡା ଯାଇ । ଦେଉଳ ଗଢ଼ା ହୋଇବେ ତ୍ରୈଲୋକ୍ୟ ଗୋସାଇଁ । ବଢ଼ାଇ ଦାରୁକୁ ବଡ଼ ଦେଉଳରେ

Digitized by srujanika@gmail.com

ଦେଇ । କବାଟ ପାଞ୍ଚଣ ମୁଁ ଅଇଲ ମୁଦ ଦେଇ । ଏକୋଇଶ ଦିନକୁ ଯେ କରିଅଛୁ କଣ । ଏକୋଇଶ ଦିନ ଗଲେ ଫେଡ଼ିବ କବାଟ ॥ ରାଣୀଏ ବୋଇଲେ ରାଜା ହୋଇଲଙ୍କ ବାଇ । ଦେଉଳରେ ଲାଗିଅଛୁ ଠୁ ପୁରୁଣା ବଢ଼ାଇ ॥ ରାଣୀ ବୋଲି ଶୁଣି ରାଜା ତବଦ ହୋଇଲା । ଷୋଳ ପାଠ ଘେନ ରାଜା ଚଳାଇଣ ଗଲା ॥ ଦକ୍ଷିଣ ଦୁଆରେ ଯାଇ କର୍ଣ୍ଣ ଯେ ପାତିଲା । ଠୁକୁ ଠୁକୁ ଶବଦ ଯେ କଛୁ ନ ଶୁଭିଲା ॥ ବୁଢ଼ା ବଢ଼େଇ ଯେବେ କ ଜୀବନେ ଥାଆନ୍ତା । ବାରୁଗଡ଼ା ଶବଦ ଯେ ବାହାରେ ଶୁଭନ୍ତା ॥ ଏତେ ବୋଲି ରାଜା ଯେ ପାବଚ୍ଛେ ବଜେ କଲେ । ଦୁଇହାତ ଧରି ଯେ ଶିକୁଳ ଛଡ଼ାଇଲେ ॥ ଧାଇଁଯାଇ ମନ୍ତ୍ରୀବରେ ଧଇଲେକ କର । ଦେଖ ଦେଖ ସତ୍ୟ ଭଗ୍ନ ନୁହଁ ନୃପବର । ରାଜା ଆଜ୍ଞା ଦେଲେ ମନ୍ତ୍ରୀ ହୋଇଲକ ବାଇ । ରାଣୀ କହୁଛନ୍ତି ବୁଢ଼ା ଜୀବନରେ ନାହିଁ ॥ ସ୍ତ୍ରୀ ବୋଲ କଲେ ରାଜା ବଡ଼ ହାନ ହୋଇ । ସ୍ତ୍ରୀ ବୋଲ କରି କବାଟ ଦେଲେ ଫିଟାଇ ॥ ଏତେବଡ଼ ଦେବତା ଯେ ଥିବ ଅଧା ହୋଇ । ତୁମ୍ଭ କାର୍ଯ୍ୟେ କ୍ରୋଧ ହେବେ ବ୍ରହ୍ମାଣ୍ଡ ଗୋସାଇଁ ॥ ମୁହିଁ ତୁମ୍ଭ ମନ୍ତ୍ରୀଦେବ ମୋ ବୋଲ କରିବା । ଆଜ ସାତଦିନ କବାଟ ଯେ ନ ଫେଫଡ଼ିବା ॥ ଆମ୍ଭ ଲେଖାରେ ଯେ ଚଉଦ ଦିନ ହୋଇ । ଆଜ ସାତଦିନେ ଦେଖା ନୈଲେକ୍ୟ ଗୋସାଇଁ ॥ ମନ୍ତ୍ରୀବୋଲ ଯହିଁ ରାଜା ହେତୁ ନ କଲା । ଶ୍ରୀକରେ ଆପଣେ ରାଜା ମୁଦକୁ ଭାଙ୍ଗିଲା ॥ ମୁଦ ଭାଙ୍ଗି କରି ଯେ କବାଟେ ଦେଲା ହାତ ଚତୁର୍ଦ୍ଧା ମୂରତି ହୋଇଛନ୍ତି ଜଗନ୍ନାଥ ॥ ଦେଖିକରି ରାଜନ ଯେ ତବଦ ହୋଇଲା । ନସ୍ତଗଲ ନସ୍ତଗଲ ବୋଲଣ ବୋଇଲା ॥ କବାଟ ଫେଡ଼ଣ ରାଜା ଭିତରକୁ ଗଲେ । ହସ୍ତରେ ଅଙ୍ଗୁଳମାନ ହୋଇଛୁ ଦେଖିଲେ । ଦେଖିକରି ରାଜା ମନେ

Digitized by srujanika@gmail.com

ମହାଶବ୍ଦ କଲେ । ଖୋଜ ଖୋଜ ବୁଢ଼ା ବଢ଼େଇ ମୋ କେଣେ ଗଲେ ॥ ମନ୍ତ୍ରୀ ଡାକ ଦେଲେ ରାଜା ବାଇକ ଯୁକତେ । ସେହି ବୁଢ଼ା ବଢ଼େଇ ହୋଇଲେ ଜଗନ୍ନାଥେ ॥ ରାଜା ବୋଇଲେ ନଷ୍ଟସ୍ତ୍ର ହୋଇଛନ୍ତି ମୁହିଁ ॥ ମୋହ ତନ୍ଦ୍ର ହୋଇଛି ତ ବ୍ରହ୍ମାଣ୍ଡରେ ନାହିଁ ॥ ମନ୍ତ୍ରୀକି ବୋଇଲେ ରାଜା ସମ୍ଭାଳ ତୋହର ॥ ନଷ୍ଟସ୍ତ୍ର ମରିବ ବୋଲି ବୋଲେ ନୃପବର ॥ କୁଶ ଶଯ୍ୟା କରି ରାଜା ଶୋଇଲା ଯୁକତେ । ରାଣ୍ଡ ଅଷ୍ଟ ମାନେ ଭେଟ ହେଲେ ଜଗନ୍ନାଥେ ॥ ଠାକୁର ବୋଇଲେ ରାଜା ହୋଇଲୁକ ବାଇ । କଳିଯୁଗେ ବସିବୁ ବଉଦ୍ଧ ରୂପ ହୋଇ ॥ ତୋହ କାର୍ଯ୍ୟ ଥିଲେ ରାଜା ଯୋଗାଇବୁ ଏତେ । ଦୟୁଣାରେ ହାତ ଗୋଡ଼ ଛୁଆଇଣ ମୋତେ ॥ କରପତ୍ର ଯୋଡ଼ି ଇନ୍ଦ୍ରଦ୍ୟୁମନ ବୋଲଇ । ସାବଧାନେ ଶୁଣ ପ୍ରଭୁ ତ୍ରୈଲୋକ୍ୟ ଗୋସାଇଁ ॥ ବୁଢ଼ା ବଢ଼େଇ ସନ୍ତାନ ଯୁଗେ ଯୁଗେ ଥିବ । ବରଷକେ ରଥର ନିର୍ମାଣ ହୋଇବ ॥ ହସିକରି ବୋଲୁଛନ୍ତି ପ୍ରଭୁ ନାରାୟଣ । ଯାହା ପଚ୍ଛରଇ ରାଜା ସେହି ସେ ପ୍ରମାଣ ॥ ଯେବଣ ଶବର ଗୋଷ୍ଠି ବନନ୍ତରେ ଥିଲା । ନୀଳ ଯେ ମାଧବ ରୂପ ଆମ୍ଭର ପୂଜିଲା । ଶବରର ଘରେ ଯେଉଁ ପୁତ୍ର ହେବେ ଜାତ । ଦଇତ ସେବକ ହେବେ ବୋଲେ ଜଗନ୍ନାଥ ॥ ଯେଉଁ ବ୍ରାହ୍ମଣ ତୋହର ଦୂତ ପଣେ ଗଲା । ନୀଳ ଯେ ମାଧବ ରୂପ ଭେଟ ସେ ପାଇଲା ॥ ସେ ବ୍ରାହ୍ମଣ ଘରେ ଯେଉଁ ପୁତ୍ର ହେବ ଜାତ । ପ୍ରଭୃତ ସେବକ ସେ ବୋଇଲେ ଜଗନ୍ନାଥ ॥ ବିଦ୍ୟାପତି ବ୍ରାହ୍ମଣ ଯେ ଦୂତ ପଣେ ଗଲା । ଶବର ଝିଅଙ୍କୁ ସେ ଯେ ପ୍ରଦାନ ହୋଇଲା ॥ ଶବରୁଣୀଠାରୁ ଯେଉଁ ପୁତ୍ର ହେବ ଜାତ । ଶୁଦ୍ଧ ଶୁଆର ସେ ହେବ ବୋଲେ ଜଗନ୍ନାଥ । ଶେଷଘରେ ସେ ଯେ ଶୁଦ୍ଧ ଶୁଆର ହୋଇବେ ।

Digitized by srujanika@gmail.com

ଘର୍ଷି କରି ମୃଗମାନ ରଗଡ଼ିଣ ଦେବେ ॥ ତାରପରୁ ହାଟକାନ୍ଦ ବଣ୍ଟକେ ଆଣିବ । ଅଣସର ଘରେ ମେହ ଶ୍ରୀଅଙ୍ଗେ ଲେପିବ ॥ ମାଗ ହେ ଇନ୍ଦ୍ରଦ୍ୟୁମନ ମାଗ ମୋତେ ବର । ଯାହା ସେ ମାଗିବୁ ଦେବ ବୋଲେ ଚକ୍ରଧର ॥ ଇନ୍ଦ୍ରଦ୍ୟୁମନ ବୋଇଲା ଯେବେ ଦେବ ବର । ଯାହା ମୁଁ ମାଗୁଛି ମୋତେ ଦିଅ ଚକ୍ରଧର ॥ ସବୁଦିନେ ଏହି କଥା ଥିବ ଯେବେ ରହି । ଏହି କଥା ମୋହର ଯେ ମାଗୁଣି ଅଟଇ ॥ ରାତ୍ର ଅର୍ଦ୍ଧମାନେ ତୋ କବାଟ ପଡ଼ିଥିବ । ରାତ୍ର ପାହାନ୍ତ୍ରେ ଆଉ କବାଟ ଫିଟିବ ॥ ସବୁ ହୋଇ ତିନ ଦଣ୍ଡ ଶୟନ କରିବ । ଖାଉ ଭୁଞ୍ଜ ଜଗନ୍ନାଥ ହାତ ନ ଶୁଖିବ ॥ ଦିନକ ଯାକର ଭୋଗ ଭୁଞ୍ଜୁଥିବ ରହି । ଏହିବର ମୋତେ ଦେବେ ତ୍ରୈଲୋକ୍ୟ ଗୋସାଇଁ ॥ ଠାକୁରେ ବୋଇଲେ ରଜା ମାଗୁ ଆମ୍ଭ ଗତେ । ତୋତେ ବର ଦେବ ବୋଲି ବୋଲେ ଜଗନ୍ନାଥେ ॥ ଇନ୍ଦ୍ରଦ୍ୟୁମନ ବୋଇଲେ ଦେବେ ଯେବେ ବର । ସତ୍ୟ ମୋତେ କରିଥିବ ପ୍ରଭୁ ଚକ୍ରଧର ॥ ତୁମେ ଯେବେ ବର ଦେବ ମାଗୁଅଛି ମୁହିଁ । ମୋହର ବଂଶରେ କେହି ନ ଥିବେ ଗୋସାଇଁ ॥ ଠାକୁରେ ବୋଇଲେ ଏହା ମାଗୁ କାହିଁ ପାଇଁ । ତୋତେ ଯେନ ଯୁଗରାଜ୍ୟ କରୁଥିବ ମୁହିଁ ॥ ଇନ୍ଦ୍ରଦ୍ୟୁମ୍ନ ବୋଲେ ମୋର ତେଣେ କାର୍ଯ୍ୟ ନାହିଁ । ସବୁଦିନେ କୀରତି ମୋହର ଥିବ ରହି ॥ ପୁଣ ନାତି ବୋଲିବେ ଯେ ଦେଉଳ ଆମ୍ଭର । ଆମ୍ଭର ବୋଇଲେ ଧର୍ମ ଯିବ ଯେ ମୋହର ॥ ଜଗନ୍ନାଥ ବୋଇଲେ ଯେ ମଧୁରବଚନ ॥ ତୋର ମନୋରଥ ସିଦ୍ଧ ହେବ ହେ ରାଜନ ॥ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଯେ ଦେବଙ୍କୁ ଅଶେଷ । ଶ୍ରୀହରି ଚରଣେ ନିତ୍ୟ ସେବେ କୃଷ୍ଣଦାସ ॥

—ସମାପ୍ତ—

ମୁଦ୍ରଣ–କେ. ଜେ. ପି. ପ୍ରିଣ୍ଟିଂ ଓ୍ୱାର୍କସ୍ ଅଲିଶାବଜାର, କଟକ-୨

Digitized by srujanika@gmail.com

# ବିଜ୍ଞାପନ

## ଓଷା, ବ୍ରତ, ମେଳା ଓ ସ୍ତୁତି

ମାଣବସା ଲକ୍ଷ୍ମୀ ପୁରାଣ
ଗୁରୁବାର ଓଷା
ଅଲଣା ଓଷା
କୁଆଁର ପୁନେଇଁ ଓଷା
ଖୁଦୁରୁକୁଣି ଓଷା
ଷୁଉଲଭଜା ଓଷା
ଚୈତ୍ର ମଙ୍ଗଳବାର ଓଷା
ଷଣ୍ଠୀ ଓଷା
ବଡ଼ ଓଷା
ବାଟ ଓଷା
ବୁଧେଇ ଓଷା
ଭାଇ ଜଉଁଜିଆ ଓଷା
ଶନି ଓଷା
ଦୁତିଆ ଓଷା
ଦାଣ୍ଡ ପହଁରା ଓଷା
ବାଲୁକା ପୂଜା
ଅନନ୍ତ ବ୍ରତ
କେଦାର ବ୍ରତ
ଜନ୍ମାଷ୍ଟମୀ ବ୍ରତ
ବଜ୍ରମହାକାଳୀ ବ୍ରତ
ଷନ୍ଦ୍ରପୂଜ ବ୍ରତ
ନାଗଲ ଚତୁର୍ଥୀ ବ୍ରତ

ରତ୍ନମାଷ୍ଟମୀ ବ୍ରତ
ରାଇଦାମୋଦର ବ୍ରତ
ସଙ୍କଟ ଚଉଠି ବ୍ରତ
ସୋମନାଥ ବ୍ରତ
ସୁଦଶା ବ୍ରତ
ସାବିତ୍ରୀ ବ୍ରତ
ରାଧାଷ୍ଟମୀ ବ୍ରତ
ବାଳ ତ୍ରିଶୂଳ ବ୍ରତ
ଗୁରୁ ପଞ୍ଚମୀ ବ୍ରତ
ଶୁକ୍ରବାର ବ୍ରତ
ଅଷ୍ଟଶମ୍ଭୁ ମେଳା
ଶନିଶ୍ଚର ମେଳା
ନବଗ୍ରହ ମେଳା
ଧବଳେଶ୍ୱର ମେଳା
ଠାକୁରାଣୀ ସ୍ତୁତି
ଗଜ ନିସ୍ତାରଣ
ସର୍ବମଙ୍ଗଳା ସ୍ତୁତି
ଦୁର୍ଗା ସ୍ତୁତି
ମୃଗୁଣୀ ସ୍ତୁତି
କାଳିକା ସ୍ତୁତି
ସର୍ବ ଦେବାଦେବୀ ଜଣାଣ
ଆରତି ଧ୍ୱଂସନ

Digitized by srujanika@gmail.com